# ଉତ୍କଳ ପ୍ରହେଳୀ ଓ ପହଳି

## ଦ୍ୱିତୀୟ ଭାଗ

( ଛିଣ୍ଡାଗଣ୍ଡ, ଢ଼ଗ, ପ୍ରବାଦ ଓ ପ୍ରବଚନ )

ସଂଗ୍ରାହକ—

ଶ୍ରୀ ଲକ୍ଷ୍ମଣ କୁମାର ପରିଡ଼ା
(ପୂର୍ବତନ ଅଧ୍ୟକ୍ଷ-କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ,
ନିମାପଡ଼ା ମହାବିଦ୍ୟାଳୟ)

ଓ

ଶ୍ରୀ ସଂଗ୍ରାମ କେଶରୀ ପରିଡ଼ା, ଏମ୍. ଏ.

ନିଶାମଣି ପ୍ରକାଶନୀ

# ଉତ୍କଳ ପ୍ରହେଳୀ ଓ ପହଳି

(ଦ୍ୱିତୀୟ ଭାଗ)

ସମ୍ପାଦକ—**ଶ୍ରୀ ଲକ୍ଷ୍ମଣ କୁମାର ପରଡ଼ା**

ଓ

**ଶ୍ରୀ ସଂଗ୍ରାମ କେଶରୀ ପରଡ଼ା,** ଏମ୍.ଏ.

ପ୍ରକାଶକ—**ନିଶାମଣି ପ୍ରକାଶନୀ**
(ସଦାଙ୍ଗୋଇ, ପୁରୀ)
ରାଜାରାଣୀ କଲୋନୀ, ପ୍ଲଟ-୩୩
ଟଙ୍କପାଣି ରୋଡ଼, ଭୁବନେଶ୍ୱର-୨, ଖୋର୍ଦ୍ଧା

ପ୍ରକାଶ କାଳ—
**ଉତ୍କଳ ଦିବସ, ୧୯୯୪**



ମୁଦ୍ରଣ—ପ୍ରେସ ଇଣ୍ଟରନ୍ୟାସନାଲ, ଭୁବନେଶ୍ୱର

**ମୂଲ୍ୟ—ଦଶଟଙ୍କା ମାତ୍ର**

# Utkal Praheli O' pahali

*Collected by :*
**Sri L. K. Parida**
Former Principal,
Kavi Samrat Upendra Bhanja Mahavidyalaya,
Nimapara College
and
**Sri Sangram Keshari Parida**, M.A.

*Published by :*
**Nishamani Prakashani**
(Vill Sadangoi, Puri)
Rajarani Colony, Plot No. 33
Tankapani Road, Bhubaneswar-2, Khurda
*Published on :*
**Utkal Dibasa, 1994**

*Printed at* :
Press International
Bhubaneswar

**Price : Rupees Ten only**

# ମୁଖବନ୍ଧ

ଭୁବନେଶ୍ୱର କବିଚନ୍ଦ୍ର—କବି ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ବ୍ରହ୍ମପୁର ନିକଟସ୍ଥ ହିଞ୍ଜିଳି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତାଙ୍କ ନାମ ହରିକୃଷ୍ଣ ଦାଶ ଓ ମାତାଙ୍କ ନାମ କୃଷ୍ଣପ୍ରିୟା । କବି ୧୮୬୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ଓ ୧୮୯୬ରେ ସ୍ୱର୍ଗାରୋହଣ କରିଥିଲେ । ସେ ଉପେନ୍ଦ୍ର ଭଞ୍ଜଙ୍କ ଅନୁକରଣରେ 'ସୀତେଶ' ବିଳାସ 'ବାସୁଦେବ ବିଳାସ', ପ୍ରବନ୍ଧ ଚନ୍ଦ୍ରମାଳା 'ଶବ୍ଦକାବ୍ୟ ବନ୍ଧୋଦୟ'ର ଅନୁକରଣରେ ଲେଖିଥିଲେ । ଏହା ଛଡ଼ା ସେ ନିମ୍ନଲିଖିତ ଗ୍ରନ୍ଥମାନ ଲେଖିଥିଲେ ।

| | | |
|---|---|---|
| ୧- ଶିବରାମ ଜଣାଣ | ୨- ଚୌପଦୀ ରତ୍ନ | ୩- ରସକଲ୍ଲା |
| ୪- ଶ୍ରୀନିବାସ ଦୀପିକା | ୫- କଟପାସ୍ୟା | ୬- ଚୌପଦୀମାଳା |
| ୭- ଚଉପଦୀ | ୮- ଜାତକ ପ୍ରକରଣ | ୯- ଢଗରତ୍ନ । |

ଏହି ଢଗରତ୍ନ ପୁସ୍ତକଟି ପ୍ରାପ୍ତ ପୁନଃମୁଦ୍ରଣ ଏ ଯାବତ୍ ହୋଇନାହିଁ । ଏହା ଦିନେ ନା ଦିନେ ଲୋପ ପାଇଯାଇ ପାରେ । ଲୋକରତ୍ନ କୁଞ୍ଜବିହାରୀ ଦାଶଙ୍କ ପଲ୍ଲୀଗୀତ ସଂଚୟନ, ଲୋକ ବାଣୀ ସଂଚୟନ ପ୍ରଭୃତିରେ ଏଗୁଡ଼ିକ ସ୍ଥାନ ପାଇପାରି ନାହାନ୍ତି । ଏହି ଦୃଷ୍ଟିରୁ ତାହା ପୁନଃ ପ୍ରକାଶ କଲି ।

ଏହି ଢଗରତ୍ନର ଢଗଗୁଡ଼ିକ ଛିଣ୍ଡାଗଣ୍ଡ ଶ୍ରେଣୀର । କେତେଗୁଡ଼ିଏ ଢଗ (ଛିଣ୍ଡାଗଣ୍ଡ) ଶୁଣିଲା ବେଳକୁ ଅଶ୍ଳୀଳତା ବ୍ୟଞ୍ଜକ କିନ୍ତୁ ତହିଁର ଅର୍ଥ ଅଶ୍ଳୀଳ ନୁହେଁ ଯଥା-: ପାରି ମଣୁଣୀ ଫିଟା କରୁ । ଯେଉଁ ପୁରୁଷର ଯେତେ ଇଚ୍ଛା—ନାଁ ଦିଆ ବା ପ୍ରହେଳିକା । ଏଥିର ଅର୍ଥ ତାଳପତ୍ର ପୋଥିରୁ ଡୋରି ଫିଟାଇ ତାହା ପଢ଼ିବାକୁ ବସିବା, 'ଲଇଁ ପଢ଼ିଲି ଭଁ କରି ବୋବ ଦେଲି, ନାଁ କରି ପୁରେଇ ଦେଲି—ପ୍ରହେଳିକା ବା ନାଁ ଦିଆରେ ଏଥିର ନାଆଁ ଲୁଣ୍ଡାକୁ ଫୁଙ୍କି ଚୂଲି ମୁହଁ ବାଟେ ପୂରେଇ ଦେଇ କୁହୁଳା ପକାଇବା' ଗୋପାଳଚନ୍ଦ୍ର ପ୍ରହରାଜଙ୍କ ମତରେ "ଏ ଶ୍ରେଣୀର ଢଗମାନ ପରିହାର, ପରିବର୍ତ୍ତନ ବା ସଂଶୋଧନ ନ କଲେ ନଚଳେ । ଏଣେ ପରିବର୍ତ୍ତନ କରିବାକୁ ଗଲେ ବା ପରିବର୍ତ୍ତନ କଲେ ଏ ଶ୍ରେଣୀର ଢଗ ବା ବଚନମାନଙ୍କରେ ଥିବା ଉପାଦେୟ ଖାଣ୍ଟି ଓଡ଼ିଆ ଶବ୍ଦ ଓ (Idiom) ଢଙ୍ଗମାନ ଲୋପାରେ ଅନ୍ୟନ ହାବୁଡ଼ିବ

ନାହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ ଯେ ଗାଢ଼ ନିଦ୍ରାକୁ ଗହମ ନିଦ ବୋଲଯାଏ । ଗୋଟିଏ ଅଶ୍ଳୀଳ ଢ଼ଗରେ (ଟୋକା ଶୋଇଥିଲ ଗହମ ନିଦ) ଏ ଶବ୍ଦଟି ଅଛି । ଅନ୍ୟତ୍ର ଏ ଶବ୍ଦର ବ୍ୟବହାର ମୋ ଦ୍ୱାରା ବୃତ୍ତରେ ପଡ଼ିନାହିଁ । ଏ ଶବ୍ଦଟି ପରିହାର କଲେ ଗହମ ନିଦ ପରି ଉପାଦେୟ ଶବ୍ଦରୁ ମାତ୍ରା ଗ୍ଲାନିବାକୁ ହେବ, ଅଥଚ ଢ଼ଗଟିକୁ ଯଥାଶ୍ରୁତଂ ତଥା ଲିଖିତଂ କଲେ ପୁସ୍ତକଟି କୁରୁଚିଦ୍ୱାରା ଦୂଷିତ ହେବ । ଢ଼ଗରେ ଥିବା ଉପାଦେୟ ଶବ୍ଦଟି ରଖିବାକୁ ହେବ ଅଥଚ ଢ଼ଗର ଭାଷା ଓ ଭାବକୁ ଏପରି ବଦଳେଇବାକୁ ହେବ ଯେ, ଯେପରି ତହିଁରୁ ଢ଼ଗର ମୌଳିକତା ଓ ଗ୍ରାମ୍ୟ ଦେଶଜତା ଲୋପ ନପାଏ ।"

—(ଓଡ଼ିଆ ଲୌକିକ ପଦ ବା ଢ଼ଗଢ଼ମାଳି ବଚନ ୧ମ ଭାଗ)

ଗୋପାଳ ପ୍ରହରାଜ କେବଳ ଅଶ୍ଳୀଳ ଢ଼ଗର ପରିବର୍ତ୍ତନ ସପକ୍ଷରେ ମତାମତ ଦେଇଥିବେଳେ ଡ଼ଃ କୁଞ୍ଜବିହାରୀ ଦାଶ ଏହା ବିପକ୍ଷରେ ମତପୋଷଣ କରି କହନ୍ତି " କିନ୍ତୁ ଢଗ ସଂଶୋଧନର ଅଧିକାର ଆମର ଅଛି କି ? ପ୍ରାଚୀନ ରଚନା ମଧ୍ୟରେ ଅଧୁନାତନ ସଂଶୋଧନ କାପଟତା ବୋଧ ହେବ ନାହିଁ କି ? ତେଣୁ ଇଂଲଣ୍ଡରେ (Dictionary of Slangs) ଓ ଆମ ଦେଶରେ ବହୁ ଅଶ୍ଳୀଳ କାବ୍ୟ କବିତା, ଉପନ୍ୟାସ, ଗଳ୍ପ ଚଳୁଥିବା ବେଳେ ମନ୍ଦିର ମାନଙ୍କରେ ଅଗଣିତ ଅଶ୍ଳୀଳ ମୂର୍ତ୍ତିର ପ୍ରଦର୍ଶିତ ହୋଇଥିବା ବେଳେ ଅଶ୍ଳୀଳ ଢଗମାନ ବାଦ ଦେବା ଯୁକ୍ତିସଙ୍ଗତ ନୁହେଁ ।"

(କୁଞ୍ଜବିହାରୀ ଗ୍ରନ୍ଥାବଳୀ-୮ମ ଭାଗ)

ମୋ ମତରେ ଅଶ୍ଳୀଳ ଢଗଢ଼ମାଳି, ପ୍ରବାଦ ଓ ବଚନ କିମ୍ବା ଲୋକଗୀତର ଏକ ବିଭାଗ ମନିଷ ଶରୀରରେ ଥିବା ଅଶ୍ଳୀଳ ଅଂଶ କାଟି ଛଡ଼ାଇ ଦେଲେ ତାର ଅଙ୍ଗର ସ୍ୱାଭାବିକତା ଯେପରି ନଷ୍ଟ ହେବ, ସେହିପରି ଅଶ୍ଳୀଳ ଢ଼ଗଗୁଡ଼ିକୁ ପରିବର୍ତ୍ତନ କରିଦେଲେ ଢ଼ଗଢ଼ମାଳି ଗୁଡ଼ିକର ସ୍ୱାଭାବିକତା ସେହିପରି ହାନି ହେବ । ଏଣୁ ଢ଼ଗଗୁଡ଼ିକର ଅଶ୍ଳୀଳ ଅଂଶ ଉଠାଇ ଦେବାର ସପକ୍ଷରେ ମୁଁ ନୁହେଁ । ଲୋକ ସାହିତ୍ୟ ସ୍ୱତଃସ୍ଫୂର୍ତ୍ତ । ଲୋକଗୀତ, ପହେଳିକା, ଢଗଢ଼ମାଳି, ପ୍ରବାଦ ପ୍ରବଚନ, ଡ଼ାକ ଋଷି ବଚନ, ଖନାବଚନ, କୃଷ୍ଣକନ ବଚନ, ନାଥିଆ ବଚନ, ଠକାଇ ବଚନ, ମଠ ବଚନ ଓ ଶାସ୍ତ୍ରବଚନ ପ୍ରଭୃତି ଏହାର ଅନ୍ତର୍ଗତ । କେବେ କାହାଦ୍ୱାରା ଏଗୁଡ଼ିକ ରଚିତ ହୋଇଥିଲ, କହିବା ସହଜସାଧ୍ୟ ନୁହେଁ । ଲୋକମୁଖରୁ ମୁଖ ପ୍ରଚଳିତ ହୋଇ ଏହା ଏଯାବତ୍ ଚଳିଆସୁଛି । ବେଦବାଣୀ ପରି ଏଗୁଡ଼ିକ ଯଥାର୍ଥରେ ଅପୌରୁଷେୟ ।

ଲୋକ ସାହିତ୍ୟ ଲୋକମାନଙ୍କର ଅନାବିଲ ପ୍ରକାଶ । ଏହା ସ୍ୱୟମ୍ଭୂ ଓ ସ୍ୱୟଂ ସମ୍ପୂର୍ଣ୍ଣ । ଜାତୀୟ ଜୀବନର ପ୍ରାଣଧାରାରୂର୍ମିରେ ଏହା ଚିର ଅଭିଷିକ୍ତ ଉତ୍କଳ ସମାଜର ପ୍ରକୃତ ସ୍ୱରୂପ ଏଥିରେ ଯେପରି ରୂପାୟିତ ତାହା ଅନ୍ୟତ୍ର ଦୁର୍ଲଭ ।

ଢଗଢମାଳି ପ୍ରବାଦ ପ୍ରବଚନଗୁଡ଼ିକ ଜାତିର କୋଠ ଭଣ୍ଡାର । ଏଥିରେ ବହୁ ପୁରୁଷାର୍ଜିତ ଅନୁଭବ ଜ୍ଞାନ ଓ ମାନବ ପ୍ରକୃତିର ସତ୍ୟମାନ ସୁନ୍ଦର ଓ ହୃଦୟଗ୍ରାହୀ ଭାବରେ ଚୁମ୍ବକ ରୂପେ ସାଇତା ହୋଇ ରହିଯାଇଛି ।

ଆମେ ଅନେକ ସ୍ଥଳରେ କହୁଥାଉଁ ଆମ ଦେଶ ଗରିବ, ଆମ ଭାଷା ଦୀନ, ହୀନ । ଏହା ସତେ ଯେମିତି ଆମ ଦେହସୁହା ହୋଇ ଗଲାଣି । କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର । ଆମେ କହି ନଜାଣି କଥା ସୁନ୍ଦର କରିପାରୁ ନାହୁଁ, କି ବାନ୍ଧି ନ ଜାଣି ମଥା ସୁନ୍ଦର କରି ପାରୁ ନାହୁଁ । ଆମର କଥା ଅଛି ମଥା ବି ଅଛି ।

ଭାଷା ଗମ୍ଭୀର ବୃକ୍ଷ । ଠେଙ୍ଗା ବୃକ୍ଷ ନୁହେଁ । ଏହା ଆମ ଜୀବନ ସଙ୍ଗରେ ବଂଚିଛି । ଆମ ଭୂଇଁ ଓ ଆମ ପାଣି ପବନରେ ଏହାର ଜମଣ ଓ ବେଢ଼ଷଣ । ନାଚ ନଜାଣି ଆମେ ଅଗଣାର ଦୋଷ ଦେଲା ଭଳି ଭାଷାର ଦୋଷ ଦେଉଛେ । ଆମେ ମାଆ ମୋହ ଛାଡ଼ି ମାଉସୀ ମୋହରେ ମାତିଛେ । ପଳାଇ ପଶିଲି ମାଉସୀ ଘରେ, ମାଉସୀ ମାରିଲା ଦି ପାହାରେ ପର ଆଜ ଆମର ଅବସ୍ଥା ଏହି ମନେ ରଖିବା ଉଚିତ ଯେ ମାଉସୀ କେବେ ମା ହେବ ନାହିଁ ।

ଓଡ଼ିଆରେ ଅସଂଖ୍ୟ ପ୍ରବାଦ ଓ ପ୍ରବଚନ ରହିଛି । ଏଗୁଡ଼ିକ ଢଗ-ଢମାଳିଠାରୁ ସ୍ୱତନ୍ତ୍ର । ପ୍ରବଚନରେ ଯେ ଗମ୍ଭୀର ଓ ସୁଦୂରପ୍ରସାରୀ ଅର୍ଥଗୌରବ ଅଛି, ତାହା ଢଗରେ ନାହିଁ । ତେଣୁ ଢଗଠାରୁ ପ୍ରବଚନର ସାହିତ୍ୟିକ ମୂଲ୍ୟ ଅଧିକ । ଏଗୁଡ଼ିକ ବହୁ କାଳ ପର୍ଯ୍ୟନ୍ତ ସାହିତ୍ୟ-ଦରବାରରେ ଅସ୍ପୃଶ୍ୟ ଏବଂ ଅପାଂକ୍ତେୟ ବିବେଚିତ ହେଉଥିଲା । ଆଧୁନିକ ଯୁଗରେ ଯେତେଦୂର ଜଣାଯାଏ ଫକୀର ମୋହନ ହିଁ ପ୍ରଥମେ ଏଗୁଡ଼ିକୁ ବ୍ୟାପକ ଭାବରେ ସାହିତ୍ୟରେ ପ୍ରଚଳିତ କଲେ । ସେହିଦିନଠାରୁ ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ସ୍ୱୀକୃତ ହୋଇ କ୍ରମେ ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ, ଜୀବନୀ ଭ୍ରମଣ କାହାଣୀ ଓ ପ୍ରବନ୍ଧରେ ଅଧିକରୁ ଅଧିକତର ଭାବରେ ବ୍ୟବହୃତ ହେଉଅଛି । ଏହା ଫଳରେ ଓଡ଼ିଆ ସାହିତ୍ୟ ଜୀବନ୍ତ ଓ ଋଦ୍ଧିମନ୍ତ ହୋଇଅଛି ଏଥିରେ ସନ୍ଦେହ ନାହିଁ ।

ଶେଷରେ ଲୋକରତ୍ନ ଡଃ. କୁଞ୍ଜବିହାରୀ ଦାଶ ଯେଉଁ ଲୋକ ସାହିତ୍ୟକୁ ଲୋକଲୋଚନକୁ ଆଣିଥିଲେ ତାଙ୍କ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରୁଛୁ । ବନ୍ଧୁ ଦୁଃଖୀଶ୍ୟାମ ପଟ୍ଟନାୟକ ଢଗରତ୍ନ ପୁସ୍ତକଟି ଦେଇ ତାହାକୁ ପୁନଃ ପ୍ରକାଶ କରିବାରେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ । ପରିଶେଷରେ ନମ୍ର ଚଣ୍ଡୀପାଠ କରି ଗ୍ରନ୍ଥ ପରିସମାପ୍ତି କରୁଛୁ ।

ଜୟ ଜୟ ମାଚଣ୍ଡୀ ତୁଲେ କଇଁଚ ମୂରତ
ବେଦ ଜାନୁଚକ୍ର ମାଗୋ ହେଲୁ ଉତ୍ପତ
ଦଇବ ଯୋଗରୁ ମାଗୋ ହେଲୁ ଦୁଇ ଫାଳ
ଫାଳ ଫାଳ କରେ ମାଗୋଲେ ଲକ୍ଷ ଲକ୍ଷ ବାଳ
ଯେତେବେଳେ ଲଣ୍ଡାବୀର ପସଇ ଧଂସଇ
ସବୁ ସବୁ ବୃକ୍ଷମାନ ଯାନ୍ତି ଆଡ଼ ହୋଇ
ଭିତରେ ପଶିଣ ବୀର ବଜାଏ ଡମ୍ବରୁ
ନଝର ସେ ଝର ବହେ କୈଳାସ ଶୃଙ୍ଗରୁ

(ଗୋଟା ତାଳରୁ ତାଳସଜ ବାହାର କରି ହାତ ବୁଢ଼ା ଅଙ୍ଗୁଠିରେ ତାହାକୁ ମନ୍ଥି ଫଟାଇ ପାଣି ବାହାର କରିବା)

।। ଇତି ।।

**ସଂଗ୍ରାହକ**

— * —

## (କ)

କେଉଁ ନାଗଣ୍ଠବର ନାଗଣ୍ଠକ
କଣ୍ଠରୁକେ ବୋଲେ ତୁତ ଶବେଙ୍କା
କହୁ ପାରବୁକି ଢ଼େଗ ରଜନ
କଥା ପଚୁରିବ ବଡ ଯତନ
କହୁବ ବୋଇଲ
କଣ୍ଠାଷେ ଅନାଇ ନବ ଛଇଲା (୧)

ଖୀଣ କଟି ତାର ଚକ୍‌କଣ ଅଙ୍ଗ
ଖଟଇ ପରକୁ ଗୃଖଣ୍ଡେ ଢେଙ୍ଗ
ଖିଆଲ ମଣଇ ଯେତେ ମାଡ଼ିଲେ
ଷଣେ ନଗ୍ରୁଡ଼ଇ ଗ୍ରୁଡ଼ିଲେ, ଢେହୁଲେ
ଖାସା ସେ ଲମ୍ପଟ
ଖସ୍ତଦନେ ଶୁଭେ ଫଟ ଫଟ (୨) ...... କଠଉ

ଗାଢ଼ ଦେହୁ ତାର ମୂଷଳ ଲମ୍ବ
ଗୋଡ଼ ଦୁଇ ରଖେ କରଣ ଲମ୍ବ
ଗାତ ଭିତରକୁ ମାରେ ତୁହାଇ
ଗୁଂଜିବାରେ ଧପ ଧପ ଶୁଭଇ
ଗତାଗତେ ଝାଳ
ଗଳ ନାସ୍ୱଙ୍କର ଢନ୍ତ୍ରଇ ଟେଳ (୩)........ଢିଙ୍କି

ଘଟ ଘଟ ଶୁଭେ ଘଟ ନୁହଁଇ
ଘଡ଼ି ହୋଇ ତଳ ଉପର ଦୁଇ
ଘରଷଣେ ବୋହୁ ପଡ଼ଇ ରସ
ଘଟଣ ଥାଳୀ ପଟର ସଦୃଶ
ଘନକେଶୀ ବାଲା
ଘଟ ଖାଇ କଣା ମଝିରେ କଲା (୪)......ଘୋରଣା

ଅଙ୍ଗ ଉପରେ ଯେ ଦାଗ ହୁଅଇ
ଅଙ୍ଗୀକାର କରେ ଦେଲେ ପୁରାଇ
ଅତି ସୁଖ ଲଗେ ଶୀତ କାଳରେ
ଉଣା ନୁହଇ ସେ ରଙ୍ଗଭୂଲରେ
ଭରୁକ୍ତ ଉତ୍ତମ
ତଉମା ଉତ୍ତମେ କହନ୍ତି ନାମ (୫)......କାମ୍ବଳ

ଚନ୍ଦ୍ରି ପାଶବୁକ ଯେ କେଉଁ ବୀର
ଚକଟି ହୁଅଇ ଦେହ ଉପର
ଚଉରସ ପରାଏ ଚମ କୁଣରେ
ଚର ଚର ଯାଏ କଳା ବଣରେ
ଚମତ୍କାର ଏହ
ଗୃହେଇ ରକତ ଖାବ ନୁହଁଇ (୬ ...... ଝୁର

ଛଟା ତାର ଲଠି କାଠିରୁଁ ବଳେ
ଛଟନେ ଗାଢ଼ିଆ ଭିତରେ ଖେଳେ
ଛେଳ୍ପଟ ଅଂଟେ ଲମ୍ବ ହୁଏ ଉଠିଲେ
ଛୁଉଇ ନାହିଁ ସେ ଛୁଡ଼ିଲେ ଡଲେ
ଛଅଳ ରମଣୀ
ଛ' ମାସରେ କହ ପାରୁକ ଗୁଣି (୭)......ଜୋକ

ଯୋଡ଼ାଏ ନୁହେଁ ସେ ଯୋଡ଼ାଏ ଫାଳ
ଜମାଇ ଦେଇଛୁ ଉପରେ ଠୂଳ ।
ଯୁବତୀ ମାନଙ୍କ ଅଟଇ ମୂଳ
ଯିବେ ଉଣା ହୋଇ ସବୁ ସକଳ
ଯତନେ ବର୍ତ୍ତୁଳ
ଯାଚ ଭରଥାନ୍ତି ସେ ସଦା କାଳ (୮)......ଫରୁଆ

ଝଙ୍କାଝଙ୍କିରେ ଭିଡ଼ାଭିଡ଼ି ହୋଇ
ଝୁଲ ଝୁଲ ମାଇ ଅଣ୍ଡିସ ଦୁଇ
ଝାଡ଼ି ଦେଇ ତାଙ୍କ ମାରଇ ଯେବେ

ଝର ବୋଦ୍ଧ ଗାଢ଼େ ପଡ଼ଇ ତେବେ
ଝାଲ ବନ୍ଧ ପଡ଼େ
ଝଟଡ ଲେଉଟାନ୍ତି ସେ ଗୋଡ଼େ (୯)······ଆଖୁପେଡ଼ା

ଞରତରେ ଥାଏ ଗଞ୍ଜିରେ ଭଲେ
ଦାନ୍ଥି ନକରଇ ଯେତେ ପଣ୍ଡିଲେ
ଞଣବଦେ ପଣେ ହଳଭ ଦେଲେ
ଞବର୍ତ୍ତି ଯାଏ ଗୁଲଭ ଦେଲେ
ଞଦାନ କରଣ
ଦାମ କି ଏହାର କହିବୁ ପୁଣ (୧୦) ···ନାଆ

ଟୋକା ଟୋକୀ ଦୁହେଁ କଲେ ପୂରଣ
ଟୋକ ଦେଇଥାଏ କଣାକୁ ପାଠ
ଟକ ଟକ କରି ମାରଇ ଟୋକା
ଟିକିଏ ପୂରଣ କରନ୍ତି ଏକା
ଟଳି ସେ ପଡ଼ଇ
ଟାଣ ପରି ସେହୁ ଲୁଗା ପିନ୍ଧଇ (୧୧)······ତାଳକଣ୍ଟ

ଠିଆ ହୋଇକରି ସେ ସଦାକାଳେ
ଠେଙ୍ଗାଧରି ଗାତ ମଣ୍ଡିକି ଚଲେ
ଠିକେ ତା ଭିତରୁ ରସ କାଢ଼ଇ
ଠେଷି ନାଳିଆରେ ଢଏ ପୂରାଇ
ଠାବେ ଠାବେ ଯାଇ
ଠୋକାରେ ମାଡ଼ ଫଳ ଉପୁଜାଇ (୧୨)····· ଢେଣ୍ଡା

ଡେଙ୍ଗ ଗୃଖଣ୍ଡେ ସେ କଣା ଗାଣ୍ଡିରେ
ଡ଼ାଙ୍ଗ ଗୋଟିଏକ ଦେଲେ ମୁଣ୍ଡରେ
ଡ଼ବ ଡ଼ବ କରି ମାଡିଲେ ତହିଁ
ଡ଼ାକ ବାହାରକୁ ବାହାରି ଯାଇ
ଡୁବାଏ ଶରୀର
ଡ଼କାଏତ କରି ଗୁଳେ ପାହାର (୧୩)······ପିଚକାରି

ଢ଼ମ ନୁହେଁ ଖାର ସେ ଦୁଇ ଜଣ
ଢ଼ାଳି କଣାରେ ପୂରନ୍ତ ସେ ଜାଣ
ଢ଼ଙ୍ଗେ ଉଠାଉଠି ହୋଇ ପେଲନ୍ତ
ଢ଼ାମଣା ନାଗ ପର ହୁଂକାରନ୍ତ
ଢ଼ାଳେ ତରଳଇ
ଢ଼କ୍କା ପର ଶୁଭେ ମାରେ ନଠାଇ (୧୪)...... ଖଟ

ଅଟା ଟୋପ ବୋଲ୍ ବୋଲିବୁ ନାହିଁ
ଅନେକ ଶିଳ୍ପରେ ମଣ୍ଡଣି ହୋଇ
ଅଛୁ ଦୁଇ ପଟ ତଳ ଉପର
ଅଣ୍ଡାଳି ଆଣନ୍ତ ପୂରଇ କର
ଆଣ୍ଟେ ବସି ମାଡ଼ି
ଅଣ୍ଟିରେ ରଖନ୍ତ ଗୋଟିଏ କାଢ଼ି (୧୫)........ପୋଲୁହ

ତନ ଗୋଟି ଠୁଲ ଦୁଇ ବାଟରେ
ସ୍ତ୍ରୀମାନଙ୍କର ପ୍ରୀତ ଉନ୍ଧିରେ
ଡୁହାଇ ଡୁହାଇ ଡ଼େଙ୍ଗା ପେଲନ୍ତ
ତଳ ବାଟେ ଉପରକୁ ଉଠାନ୍ତ
ପଡ଼ି ଯାଏ ଉଠି
ଉନ୍ଧି ଉଖୁରୁ ବଷ ଯାଏ ଫୁଟି (୧୬)......ଚୂଲ୍ଲୀ

ଥାଳିଏ ପରାଏ ଫଳାରେ ବାଟ
ଥଣ୍ଡ ଗୋଜା ହୋଇ ବଡ଼ ଉଝଟ
ଥାଏ ତା' ଭତରେ ଆଳୁଅ ରସ
ଥାପଣ୍ଡେ ଲମ୍ବ ଗୋଟାଏ ସେ କଯ
ଅନ୍ତରେ ଥାଏ
ଅସ୍ତୁ ନୋହୁ ଘନେ ଛଟା ଦେଖାଏ (୧୭)..... ଦୀପ

ଦ ଫାଳିଆରେ ତନ କୋଣିଆ
ଦଶେ ମହିଷାକ ଫାଳ ଫଣିଆ
ଦେହଥାଏ ଦୁଇଗୋଡ଼ ଓସାର
ଦେଖି କଣା କଳା ଦଅନ୍ତ ମାଡ଼ି
ଦୁଃଖୀର ସୋଦର
ଦଅ କହି କସ ନାମ ତାହାର (୧୮)......ଶଗଡ଼

ଧୀରେ ଛୁଡ଼ୀ ହୋଇ ଅଣାଇ ଦେଇ
ଧଶ ଫାଳିଆରେ ପୂରାଇ ଦେଇ
ଧଶ ଧଶ ହୋଇ ତଳ ଉପର
ଧନ୍ଦାଳି ମାରନ୍ତ ବଡ ସୁନ୍ଦର
ଧୀରେ ଗ୍ଳ ଯାଇ
ଧନରେ ଅସ୍ପୃହ ପାଉଛି ନାହିଁ (୧୯)······ବଡ଼ କରତ

ନାଗସ୍ଥି ନାଗର ସେ ଦୁଇଜଣ
ନାଗସ୍ଥି ବାଟ ପୋଲଟା ଜାଣ
ନଠେଇ କୁଟାଇ ଧୂଳି ଉଠାଇ
ନାଟ କଲି ପଶ ମାଡ଼ି କାଢ଼ଇ
ନକରଇ ନାହିଁ
ନରଦେ ସେ ଗାତ ଦେଖାଉ ଥାଇ (୨୦)······ହେମଦସ୍ତା

ପଟିଟି ଉପରେ ପଡ଼ଇ ଶୋଇ
ପାଦ ଦେଇଥାଏ ଅଣାଇ ହୋଇ
ପେଲି ପେଲି ରସ ପଡ଼ି କଣାର
ପଡ଼ିଲେ ଖୋଳଇ ତାର ଉପର
ପସ୍ତରଇ କନ୍ଧ
ପୋଖରି ବସ୍ତରେ ଫେଡ଼ି ଯନ୍ଦେହ (୨୧)···ବେନ୍ଦା

ଫଳ ମାଛ କ ସେ ଫାଳିଆ ଦୁଇ
ଫଟା ପଶ ଦଶେ ଫଟା ନୁହଁଇ
ଛନ୍ଦା ଛନ୍ଦ ହୁଅନ୍ତି ଗାତେ
ଫିଟାଇଲେ କେହୁ ତାକୁ ନସ୍ତଡ଼େ
ଫେଇ ତା ଭିତରେ
ଫାନ୍ଦ ଅଛୁ ଗୋଟେ ହାତ ଡେଙ୍ଗରେ (୨୨)···ତାଳପତ୍ରପୋଥି

ବଡ଼-ଓସାର ତା' ଉପର ପଟ
ବାନ୍ଧଥାନ୍ତି କରି ତଳକୁ ଶ୍ରେଷ୍ଠ

ବାଳାଏ ଭା ମୋଡ଼ ସ୍ୱଚ୍ଛ ଦୟନ୍ତ
ବାତ ଜାତ ହୁଏ ତହିଁରୁ ଅଠ
ବାନ୍ଧବୀ ବସ୍ତ୍ର
ବେଲନ୍ତୁଁ ହୁଅନ୍ତ ଭଲ ଅସ୍ୱାର (୧୩) ·····କୂଳ

ଭଉଁରି ଆକୃତ କାହ୍ନାକୁ ଜଣା
ଭର୍ତ୍ତି ହୋଇ କରେ ଯାତନି କଣା
ସବ-ନସ୍ତ୍ରେବଜ ପୁରଇ ଦେଲେ
ଖଳ ହେ ସନ୍ଧ
ଭଣ୍ଡ ବୋଲ ଏହା ବୋଲବୁ ନାହିଁ (୧୪) ·····ଲୁଲୁଣୀ

ମୁହଁ ଓସାରଣ ଉପର ପଟ
ମୂଢ ହୋଇ କରେ ନ ପାଏ ବାଟ
ମୂଳ ସରୁ ଅଗ ଗୋଟା ଗୋଟା
ମାଇଲେ ତହିଁରୁ ଉତ୍ତମ ହୁଏ
ମେଲିଲେ ବଦ୍ରେଳ
ମଣ୍ଡ କୋହ୍ଣ ଖାଜ ପଡଇ ଗଳ (୧୫)·····ଦେର ଚୂଳ

ଜଳରେ ତାହାର ଅଟଇ ଘର
ଜବେ ଢ଼ଗ ଢ଼ଗ ଚଲଇ ଖର
ଯତନେ ଭିତରେ ମାଝ କାଢ଼ଇ
ଯେବେ କୁଞ୍ଚିବ ସେ ମୂଢ ହୁଅଇ
ଯୁକ୍ତ ଆଣ୍ଠ ଫାଳ
ଜାଣି ଲେଉଟାଇ ଦେଲେ ଜଅଁଳ (୧୬)·····କଇଁଛ

ରସିକା ରସିକ ଯୋଡ଼ଏ ସେହ୍ନ
ରସିକା କଣା ମେଲି ଦେଇଥାଇ
ରସିକ ଭୁହାଇ ଭୁହାଇ ପେଲେ
ରସ ମନ୍ଥି ଜାତ ହୁଅଇ ଭଲେ
ରସି ହୁଏ ସ୍ନିଗ୍ଧ
ରସ ପର ଦଣେ କ ଅବା ଦୁଗ୍ଧ (୧୭)·····ପେଷଣା।

ଲଳିନା ଗୋଟିଏ କଣା ତା ମଝି
ଲମ୍ବ କର ଗୋଟେ ଦଅନ୍ତୁ ଝଂଜି
ଲଡ଼ ବଡ଼ କର ଦେଲେ ବୁଲାଇ
ଲଲ ପର ତହିଁ ବୋନ୍ଧ ପଡ଼ଇ
ଲଗାଲା ଅଟଇ
ଲଗଇ ବାଲରେ ଫଦେନ୍ତୁ ନାହିଁ (୧୮)........ତେଲଘଣା

ବାନ୍ଧବୀ ବାନ୍ଧବ ଯୋଡ଼ିଏ ସନ୍ଧି
ବାନ୍ଧବୀ ତଳେ ପଡ଼ି ରନ୍ଧ୍ର ଥାଇ
ବାନ୍ଧବ ତା ପରେ ହୁଅଇ ଘାଲି
ବଡ଼ କଉତୁକ ଦଅଇ ପେଲି
ବାନ୍ଧବୀ ବକ୍ଷର
ବୋଲ ରଜନୀରେ ସେ ଜରଜର (୧୯)........ଶିଲପୁଆ

ସୁନ୍ଦରୀ ସୁନ୍ଦର ଦୁଇ ବାଗୁର
ସୁନ୍ଦରୀର ଗାତେ ପଶେ ସୁନ୍ଦର
ସରୁ ଅଗ ତାର ଗୋଟା ମୂଳାର
ସର ଘର କର ମନ୍ଥନ୍ତି ଖର
ସୁରସ ବାହାର
ସମସ୍ତ ଜନ କରନ୍ତି ଆଦର । (୩୦)......ଖୁଆ

ଶଠା ବଠା ହୋଇ ମୁଣ୍ଡରେ ଜଠା
ସୁତାକ୍ଷ ମୂଳ ମୁନ ତାର ମୋଟା
ସୃଜ କଣେଣ ବସନ୍ତି ମାଡ଼ି
ସୃଜରେ ଝିଙ୍କନ୍ତି କରୁ ନ ଗ୍ରୁଡ଼ି
ସୁରୁସୁରୁ ବୁଲେ
ସଲଙ୍ଗେ କଣା ହୋଇଯାଏ ତଳେ । (୩୧)........ଭଅଁର

ଶିଶୁ ଧନରେ ଯେ ଧନ ଥାଆନ୍ତି
ଶିଖେ ଧନ କଣା ଦଶେ କାଳିଆ
ସୁନ୍ଦରୀମାନଙ୍କ ଭରଣ ପରି
ସୁବର୍ତ୍ତୁଳ ସେଇ ବଡ଼ ମାଧୁରୀ

ଶିରରେ ମକୁଟ
ସ୍ୱାଦୁ ମଧୁ ରସ ବାହାର ଆଣ୍ଟ । (୩୨)......ନଡ଼ିଆ

ହଇଗଣ ହେବୁ ପଗୃର ଆହା
ହଟିଛୁ କରବୁ ବଗୃର ଏହା
ହୋଇଛୁ ଏପର ଠଆର
ହୋଇବ ପଦାକୁ ପଞ୍ଜସ୍ତ
ହଲାଇଲେ ପଡ଼େ
ହେବ ନଥାଇ ବାଟ ଘୁରଅଡେ । (୩୩)......ମୂଷାଯନ୍ତ୍ର ।

ଷମା କର ଦୋଷ ପଣ୍ଡିତ ଜନ
ଖ୍ୟାତ ନାମ ସ୍ୱାର ଢ଼େଗ ରତନ
ଷପାରେ ମୁହିଁ ସବୁ କହିଲି
ଝାପା ଅର୍ଥ କଲ ବୋଲି କହିଲି
ଖିଆଲି ଏ ଉଲେ
ଷମେ ଭୁବନୀ କବଚନ୍ଦ୍ର ବୋଲେ । (୩୪)

ଅଫୁଟି ଫୁଟିଲି ଫୁଟି ବାସ କଲି
ଚପା ଚପି ବେଳ ହେଲିରେ
ଅଣ୍ଡାକୁ ହଲାଇ ଗୀଣ୍ଡି ଦୋହଲାଇ
କେତେ ରସ ବୋହୁ ଦେଲିରେ
(ସ୍ୱତ ହୋଇଛୁ କ ନାହିଁ ଚପି ଦେଖ ଗାଳିବା)

ସିଂହ ନୁହେଁ ତାର ବେକରେ ବାଳ
ସର୍ପ ନୁହେଁ ସେହୁ ପଶଇ ବିଳ
ବୀର ନୁହେଁ ସେହି ଧଷିଣ ପଶେ
ରସ ଉଦ୍‌ଗାରଣ ବାହାର ଆସେ ......ଆଁଖୁପେଡ଼ା!

ପାର ମଶୁଣି ଫିଟା କରୁ
ଯେଉଁ ପୁରୁଷର ଯେତକେ ଇଚ୍ଛା
(ପୋଥିରୁ ଡ଼ୋର ଫିଟାଇ ପଢ଼ିବା)

ଲଉଁ ପଢ଼ିଲି, ଚଁ କନ ବୋକ ଦେଲି
ଭଁ କର ପୂରାଇ ଦେଲି ସଁ କନ ।
(ନଥାଁ ଲୁଣ୍ଡାକୁ ଫୁଙ୍କି ଚୁଲିରେ ପୁରାଇବା)

ଟୋକା ଶୋଇଥିଲା ଗହମ ଜାଦ
ଟୋକା ଚପୁଥିଲା ତାହାର ଦୁଧ ।      …ହର୍ଣ୍ଣ ବଜାଇବା

ଆଲୋ କମଳା ମାନ ଦନକୁ ଲୁଗା ପିନ୍ଧ
ବଡ଼ ଦନକୁ ଲଙ୍ଗଳା ।      …ବାଇଗଣ ଗଛ

ଗାଣ୍ଡିମ ଅର ଭ୍ରୂ ଦେଲେ କମ୍ପାଇ
ଅଟବୀ ଆବାଳ ଦେଲେ ଦେଖାଇ

ସେ ଚିଂ ଚିଂ କର ଉଡ଼ ଚାଲଗଲା
ପକ୍ୱ ଫଳ ଧର ପକ୍ୱ ବମ୍ବାଧରୀ
ବ ଆ ତୁ ଗେହ ବୋଇଲେ ।

ଗାଣ୍ଡିମ + ଅର = ଗାଣ୍ଡିମାର-ଅର୍ଜ୍ଜୁନ, ଅଟବୀ- ବୃକ୍ଷ, ଆବାଳ - ସମୂହ
ଚିଂ ଚିଂ – ଶୁଆର ଶବ୍ଦ ବଶେଷ, ବ - ପକ୍ଷୀ, ଆ– ଆସ, ଗେହ- ଗୃହ ।

ଅର୍ଥାତ ଦନେ ସୁଭଦ୍ରା ପାଳଥିବା ଶୁଆଟି ଉଡ଼ଯିବାରୁ ଅର୍ଜ୍ଜୁନ କଟାକ୍ଷପାତ କର ବୃକ୍ଷ ସମୂହକୁ ଦେଖାଇ ଦେଇ କହିଲେ, "ତୁମ୍ଭ ପାଳିତା ଶୁଆଟି ଚିଂ ଚିଂ ଶବ୍ଦ କର ଏଇ ବୃକ୍ଷ ଗୁଡ଼ିକ ଆଡ଼କୁ ଚାଲଗଲା ।" ତା ପରେ ପାଚିଲା କଇଁଚ କାକୁଡ଼ି ପର ଓଠ ଧାରଣକାରୀ ସୁଭଦ୍ରା ଗୋଟିଏ ପାଚିଲା କଇଁଚ କାକୁଡ଼ି ଦେଖାଇ କହିଲା, "ହେ ପକ୍ଷି, ତୁ ତୋ ଘରକୁ ଆସ ।" ଏହା ପଢ଼ିଲେ ଅଶ୍ଳୀଳ ପର ଶ୍ରୁତ ହେଉଥିଲେ ମଧ୍ୟ ଅର୍ଥଟି ଅତ୍ୟନ୍ତ ଶ୍ଳୀଳ ।

ଆହାଲୋ ଡେଙ୍ଗେଇ ମାଈଁ ଦ କଡ଼କୁ ଦ ଗୋଡ଼ ଦେଇ
ମଝି କଣାରେ ଗଲେଇ ଦେ
ଟାଉ ଟାଉ କର କାଢ଼େ
ଥପ ଥପ କର ବୋହ ପଡ଼େ ।
—(କୁଅରୁ ପାଣି କାଢ଼ିବା ଓ ପାଣି ଥପ ଥପ ହୋଇ ବହ ପଡ଼ିବା)

ନାଲି ଟୁକୁ ଟୁକୁ ଶୁକଲ ବରନ
ଦେଖି ଯୁବତୀର ହୋଇଲା ମନ
ଅଗ ନ ପଶୁଣ ମୂଳ ପଶିଲା
ଦେଖି ଯୁବତୀ ଠୋ ଠୋ ହସିଲା
—କାଚ ବାହୁ

—*—

# (ଅ)

ଅଖ ବୁଲୁଥାଏ ଚକ ବୁଲୁଥାଏ ବୁଲି ପଡୁଥାଏ ମନ୍ଥ
ଫସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସନ୍ଧ

ଅଖାଇ ନାଗ  ସବୁ ଖାଟେଣୀ, ବସିଥାଏ ଚୁଲିମୁଣ୍ଡେ
ଘଇତା ଅଗରେ ଶକେଇ  କହେ କିଛି ଦେଇନାହିଁ ତୁଣ୍ଡେ

ଅଘରୁଆ ପୁଅ ଜାଣିବ ଯେହ୍ନୁଁ କଥାକେ କହୁ ତୁକାର
ଡ଼ର ନାହିଁ ପର ଭୂଆସୁଣୀଙ୍କୁ ତାକୁ ଜାଣିବ ଗ୍ରେକାର

ଅଣ୍ଟା ଭଙ୍ଗା ଗୁଆ କାଠ କାହା ପାଇଁ ଆଜି ଗୋଟା ପାନ ଭଙ୍ଗା ଲବଙ୍ଗରେ
ଗୁଜୁରାଠ

ଅଡ ସୁନ୍ଦରୀଲେ ଚନ୍ଦ୍ରହଟ ରୋଷ ଆଗ ତୋତେ ହେଲି ବଶ
ଏବେ ଯହୁଁ ଧନ ବୟସ ସରିଲା ଦାଣ୍ଡେ ବହାଉଛୁ ସଶ ।

ଅଦନ କୁ ହିଡ଼ି ଆସିଲା ମାଡ଼ ଅଦନେ ମିଳିଲା ଦେଖା
ପର ପୁଅ ଆଣି ପୋଷା ପୁଅ କଲି କେଉଁ ପୁଅକୁ ସେ ଲେଖା ।

ଅଧା କାହିଁକି ପ ଣି ନଢ଼ଢ ନଣନ୍ଦ ଗୋଡ଼ରେ ବଳା
ଥର ଥର କରି ଆସିବୁ ତ୍ରୈର ପୁଅକୁ ଝୁଣ୍ଟି ବୁ ପରା ।

ଅନା ପତରକୁ ବନା ପତର ମୂଳ ଲାଗୁଥାଏ ପର ଖେତର
ପିଠି ଖାଉଥାଏ ଖର
(ଅଗେ) ଅଣ୍ଟୁ ନଥିଲାଡ କୁଣ୍ଡା ଚକୁଳି (ଏବେ) ରୁଚୁନାହିଁ ବର ବରା ।

ଆଗ ମାଧିଆ କି, ମାଧିଆ ହାତରେ ଟଙ୍କା ଠୋକର
ମାଧିଆ ମଣିଷ ଚହ୍ଲାଇ କି ?

ଆଗରେ କାଳିଆ ନାହିଁ କରୁଥିବୁ ନାକର ଶିଙ୍ଘାଣି ଦେଖି
ଏବେରେ କାଳିଆ ଝୁରିମରୁ ଅଛୁ ଥନ ସଉବନ ଦେଖି ।

ଆଟିକା ଦୁଇଟି ଧୋଇ ଥୋଇଲିଲେ ନଗିଡ଼ି ପଡ଼ିଲି ଘିଅ
ଲୋକେ ପଚାରିଲେ କି ବୋଲି କହିବ ମୁଁ ତ ଗାଁ ମକଦ୍ଦମ ଝିଅ ।

ଆଡ଼ କଅଁଳିଆ ସନ୍ତ
ଟୋକଲୀ ମନରେ ନାହିଁ ଶରଧା, କେତେବେଳେ ହେବ ସନ୍ତ ।

ଆମ୍ବ ଗଛରେ ଆମ୍ବ ନାହିଁ ଫୋପଡ଼ କାହିଁକି ମାରୁ
ଅଣ୍ଟା ଗୁଣ୍ଠାଖେ ପଇସା ନାହିଁ ଆଖି କାହିଁ ପାଇଁ ଠାରୁ ।

ଆରେ ଚଇତା, ଧ ମାଇପରେ ଘଇତା
ତବତ ଖାଇବୁ କି ପଖାଳ ଖାଇବୁ ବେଳ ଥାଉଁ ଥାଉଁ କହିଥା ।

ଭଜା ଗାଁରେ କୁଜା
ଯେଉଁ ଗାଁରେ ଦେବତା ନାହାନ୍ତି ଶିଳ ଶିଳୁପୁଆ ପୂଜା ।

ଉଡ଼ି ଉଡ଼ି ଗଲା ହରଡ଼ ଚଢ଼େଇ ବଡ଼ ବଡ଼ ତାର ପକ୍ଷୀ
ଦିଅର ଟୋକାଟା ବଡ଼ ଚଲାକ ସଦା ମାରୁଥାଏ ଆଖି ।

ଉପର ବରଡ଼ା ହସୁଛି, ତଳ ବରଡ଼ା ଖସୁଛି,
ମଝି ବରଡ଼ା ଥାଇ କହୁଛି ତୋ ଦିନ କାଲି ଆସୁଛି ।

ଉପକାଶୀ ବନ୍ଧୁ, ଆମ୍ବ ଆଣିନାହିଁ ଶିମ୍ବ ଆଣିନାହିଁ
ଆଣିଅଛି କଷା କେନ୍ଦୁ ।

ଏଇ ବାଟେ ଗଲା, କଥା ନକହିଲା, ଦହିଲା ମୋ ପଞ୍ଚମନ
ସବୁ ସରିଯିବ କଥାତ ରହିବ କେତେ ଦିନ ଏ ଜୀବନ ।

ଏ କୋଠା ନପିନ୍ଧ ସେ କୋଠା ନପିନ୍ଧ ନାଲି ଫୁଲ ଦେଲି ଝୋଟ
ଶୋଇଲି ଶେଜରେ କଥା ନକହିଲେ
ହୃଦୟ ଯାଉଛି ଫାଟି

ଏତେ ଚତୁର, ମାଛ ବକା ବକ ଦିନ ଯାଉଥିଲି
ନଗଉଛି ଗନ୍ଧ ଅତର ।

ଏଲି କଥା ଥିଲି ମନରେ
କାଳୀକ ଘେନି କି ଘର କରିବ
ଗୋଷ୍ଠିକ ଗୁଡ଼ିଲି ବନରେ ।

ଏମିତ ଜଣେ, କାଲି ଦେଖିଥିଲି କବାଟ କଣେ
ଆଜକ ଦେଖିଲି ବାଉଁଶ ବଣେ

ଏଡ଼କ ଏତେ ମୁଦ ନାହିଁ ଗୋଡ଼ କଟୁ କେତେ
ଗୋଡ଼ରେ ଯେମନ୍ତ ମୁଦ ଥାଆନ୍ତା କଡ଼ିଡ଼ କଡ଼ିଡ଼ ବାଜି ଯାଆନ୍ତା ।

ଏହା କଲ କଏ ତାହା କଲ ହଗିଯିବାକୁ ଯାଉ ସୁଆସ
ଗୁହାଳ କାଟିବା ବନ୍ଦ କଲ ।

ଓଧ ଖାଇଲେ ପାଚଲ କଦଳୀ ଦୁସୁସ ଖାଇଲେ ପାନ
ଭୂଆ ବସନ୍ତ ବଇଷମ ହୋଇ ସବୁରେ କହୁଛୁ ଜ୍ଞାନ ।

ଓସ୍ତ ପତର ପାନଆ, ଚଢ଼ଧୁସ ଘର କନଆଁ ଯାଆନ୍ତସ ପୁଅ ବର
ଅଠର ଖଣ୍ଡ ବାଇଦ ବାଜେ ଟଙ୍ଗର ଟଙ୍ଗର ।

କଇଁଫୁଲଆ ନାଗର ବର ଶିମୁଳୀ ଫୁଲରେ ବାଇ
ପୋକଶୁଙ୍ଘା ଫୁଲ ଗୋଟିଏ ପାଇଲେ ବୁଲୁଥାଇ ଯାଇ ଯାଇ ।

କଖାରୁ କାଟିଲି ଚେକ, ସିନ୍ଦୂର କଲରେ ପଡ଼ଲ ଆଖି
ନାକ ଫୁଲଗୁଣା ଦେଖି ।

କଖାରୁ ପତର ବଣ ସାରୁ, ତୋ ଦଅରତ ତୋତେ ମାରଲ
ମୋ ଉପରେ କଆଁ ଗାଳୁ ଗାଳୁ ।

କଟକ ସହର ଡ଼ବ ଡ଼ଚ, ବାପ ଡ଼ାକୁ ନାହିଁ ଷାଇ ଡ଼ାକୁ ନାହିଁ
ନଡ଼ ବୋଲୁଥାଏ ଯିବ ଯିବ ।

କଣ୍ଢା ଫିରକି, ନୁହଁରେ କାଳଆ ତୋହ୍ୱ ଭଲକ
କେତେ ଅନାଉଛୁ ନଚେରଖି ।

ଫୁଲ ହୋଇ ନାହିଁ ନାଇବୁ, ଫଳ ହୋଇ ନାହିଁ ଖାଇବୁ
ଯାହାର ପାଇଁକି ନସର ପସର ଟଙ୍କା ଦେଲେ ସିନା ପାଇବୁ ।

କଥା ପଦେ କେତେ ଥିଲ କି ନଥିଲ ଢେଗ ଗୃଶପଦ ଥିଲ
ଯେ ଦିନୁ ଢେଉଁଲ କୃଷଭଦ୍ରା ନଦୀ ସବୁତ ପାଶୋର ହୋଇଲ ।

କମତ କମ କଡ଼ୁସ କମ ଗୋସ୍ଥ ଗୁଡ଼ ଦମ ଦମ
ସେଗରେ କେଉଁଟେ ଯାଇଥିଲୁ କି ? ନାଲି ଗାମୁଛାରେ କାଦୁଅ ଲାଗିଛୁ
କାହାର ତୁ ଆଣି ବୋହୁ ଥିଲୁ କି ?

କଂସାକୁ ତାଟିଆ ଝାଇଁ
ନୂଆ ଦେଖି କଣ ଭୁଲି ପଡ଼ିଲ, ପୁରୁଣାକ ମନେ ନାହିଁ ?

କଷି ଓଉ କଲି ସଇ, ବୋହୂ ବୋଲି ଯାକୁ ଘରକୁ ଆଣିଲି
ତା ଗୁଣ କହିବ ନାହିଁ ।
କହିବ ନାହିଁ, କହିଲେ ଏ ଘରେ ରହିବ ନାହିଁ
ଛାଟି କଲା ମାଡ ସହିବ ନାହିଁ, ଝେଣ୍ଟିଆ ପଥର ଧୋଇବ ନାହିଁ ।

କାଉରେ କାଉ, ଝାଡ଼ ବନୋଦଅ ଝାଡ଼କୁ ଯାଉଛୁ
ଅଣ୍ଡା ନାଲି ହେଲା କାହୁଁ ।

କାଙ୍କଡ଼ ଗଛର କଣ୍ଟି, ମାଙ୍କଡ଼ ଯାଉଛୁ ଯାତରା ଦେଖି
ରଙ୍ଗ ପାଲିଙ୍କିରେ ବସି ।

କାଳିଆ ଗାଈର ଲାଞ୍ଜ, ତୁ ମତେ କହୁଛୁ ଅମଣିଷ ବୋଲି
ତୁ କାହିଁ ପାଇଁ ବାଞ୍ଝ ।

କାହା କରମରେ ଖିର ଖିରସା କାହା କରମରେ ଲଡୁ
କାହା କରମରେ ଖାଇଆ ଝଡ଼ା ବୈବାଇ ବୈବାଇ ମରୁ ।

କାହିଁ ପାଇଁ ମନ କଲି
କାଠ ଝୁଣ୍ଟିଟାକୁ ଘଙ୍କତା କଲିଲେ ମାଡ଼ ଖାଇ ଖାଇ ମଲି ।

କଚ୍ଛୁ ଜାଣି ନାହିଁ ଥାକୁଲି
ଦଅଁକୁ ଖାଇଲା, ପୂଜାଖି ଖାଇଲି
ଆହୁରି ଖାଇବ ଟେଚୁଲି ।

କଚ୍ଛୁ କହେ ନାହିଁ ସରମରେ
ପଦଏ ପଦଏ କହି ଦେଉଥାଏ ବନ୍ଧ ଯାଉଥାଏ ମରମରେ ।

କଚ୍ଛୁ ଜାଣିନାହିଁ ମଉନ ମୁହଁ
ଘଇତାକୁ କାନ୍ନ ପଛରେ ବାନ୍ଧ ବୁଲୁଥାଇ ଯାଇ ଯାଇ

କଚ୍ଛୁ ଜାଣି ନାହିଁ କଣ ଭୂଆସୁଣୀ
ହାତଏ ଓଢ଼ଣା ଦେଇଛୁ

ଚୁଲି ମୁଣ୍ଡେ ବସି ମନ୍ତ୍ର ପଢୁଛୁ ।
ଗଡ଼ ଦାଣ୍ଡି ଦ୍ବାର ପଡୁଛୁ ।

କୁକୁଡ଼ାକୁ ଦେଲି ଚାଉଁ
ମୁଖ ଦରଶନ କରିବ ବୋଲି ଗୋ
ମିଛେ ମାଗୁଥିଲି ନାଉଁ ।

କୁଡ଼ିଆ ଘରର କାନ୍ଥ
ମୋତେ ନ ବୋଲିବୁ ପାକୋଇ ବୋଲି
ମୋ ଘରସାରେ ଗଲି ଦାନ୍ତ ।

କୂଲରେ କାଟିଲି ଲଉ
ସବୁଦନ କଥା ମନରେ ଅଛ
ଏକାଦନେ ଦେବ ଦାଉ ।

କୂଅରେ ପଡ଼ିଲ ଘୋଡ଼
ମୋତେ ନବୋଲିବେ କେ ବୁଢ଼ି ବୋଲି ଗୋ
ବଅସ ମୋ ଚଢ଼ କୋଡ଼ି ।

କେତେ ଚୁହୁଁଥାଉ ମୋତେ
ଝୋଠୁ ସୁନ୍ଦର ମୋର ବିନୋଦିଆ
ଚାକର ରଖିବ ତୋତେ

ଖଣ୍ଡରେ ମୋହିଲେ ଖୀରରେ ଧୋଇଲେ
ଲିମ୍ବ କି ମଧୁର ହୋଇବ
ଯେତେ ପରକାରେ ବୁଝାଇ କହିଲେ
ପର କି ଆପଣା ହୋଇବ

ଝଣ୍ଡିଆ ଘରରେ ଝଟ ବଛଣା ଝପଘରେ ଚେନ୍ନା ନବାତ ପଣା
ଖାଉଅଛୁ ବୁଢ଼ା ବସି ଖେଚର ଖେଚର ସବୁବେଳେ ହୁଏ
କ୍ଷଣେ ନହୁଅଇ ଖୁସି ।

ଝିଲିଆ ବୋଲେ ପାଟଣାରେ ଦେଖ ମୋର ଗୃଲ
ତୁ ମୁଁ ଦହେଁ ସାଙ୍ଗ ହୋଇଲେ ଯାଅନ୍ତ ଖାଇବା କାଲି ।

ଗାଣ୍ଡି ଲଙ୍ଗଳା ମୁଣ୍ଡରେ ଫୁଲ
ଟିକି ଯାଉଥାଏ ଦୁଲ୍ ଦୁଲ୍ ।

ଗାଁ ମୁଣ୍ଡେ କଲ ବାସ
ଧୋବା ଘର ଗୁଣ୍ଡ ରେଙ୍ଗୁଣ ଗଳ
ଧୋବଣୀ ମୋଡ଼ୁଛି ନଣ ।

ଗୁହାରି କରିବ କାହାକୁ
ଯା ଅଂଗରେ ଗୁହାରି କରନ୍ତି
ସେ ଗୋରସ୍ତ କରୁଛି ତାହାକୁ ।

ଗୋଦଶ୍ରୀ ଗୋଡ଼ରେ ଅଲତା ଦେଖ
ମୁହଁ ନାକଚଣା କେମନ୍ତ ସୁଖ

ଗୁଣ୍ଡିର ପୋକର ଟିକ୍କା
ବୟସ କାଳରେ ବଡ଼ ଆଦର
ବୁଢ଼ନ୍ତ କାଳକୁ ପକା ।

ଘଇତା ସୁଆଗ ଭଲରେ
ଦଅର ସୁହାଗ ଅଢ଼େଇ ଦିନଆ
ତା ମାଇପ ଅଙ୍କଲେ ଗଲରେ ।

ଘରେ ନଥାଏ ତୋରଣୀରେ ଲୁଣ
ପର ଘରେ ଲେଡେ ଛନ ଛଅଣ ।

ଘୁଷୁରିକ କାହିଁ ପାଚିଲ କଦଳୀ
ଅନ୍ଧ ହସ୍ତେ ରତ୍ନ ମୁଦ
ପେଚ୍ଚ ଚଢ଼େଇକ ସୁବର୍ଣ୍ଣ ପଞ୍ଜୁରି
କୋରଡ଼ ସୁମର କାଢ ।

ଘୋଡ଼ା ମୁଣ୍ଡ ଟାକୁ ଟାକୁ
କାହୁଁ ଆଣିଥିଲ ଥାକୁଲଟାକୁ
ଚୂଡ଼ା କୁଟି ଖାଇବାକୁ ।

ଚଇତା, ଦ ମାଇପରେ ଘଇତା
ତବତ ଖାଇବୁ କ ପଖାଳ ଖାଇବୁ ବେଳ ଥାଉ ଥାଉ କନ୍ଦୁଥା

ଚକ ବୁଲୁଥାଏ ଅଙ୍ଗ ବୁଲୁଥାଏ ବୁଲି ପଡୁଥାଏ ପଇ
ଫସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସନ୍ଧ ।

ଚଢ଼େଇ ଅଣ୍ଡାରେ ଜୁଣ
ବଡ ଘର ଦେଖି ଦେଇଛ ବାପାହେ
ପେଜକୁ ନମିଳେ ଲୁଣ ।

ଚରୁରେଇ, ବଳ ଦେଉଥାଏ ବଦୁରେଇ
ଏଣେତେଣେ ଘୁଞ୍ଚି ଗୋଟିଏ ଗୋଟିଏ ଠୋକ ଦେଉଥାଏ ଘୁଘୁରେଇ ।

ଘୁଲରେ ଖୋସିଲି ଦାଆ
ଏତେ ବଡ ଘରେ ଦେଇଛ ବାପାହେ ଶିଙ୍ଘି ଠାଳି ମୁହିଁ ଜାଆ ।

ଚତା କୁଟାଇଲି ବାହାରେ
ଯାହା ଲାଗି ଚତା କୁଟାଇଥିଲି ସେତ ନାହିଁ ଏ ଗାଁରେ ।

ଛି ଛି ଲେ ପଶୁ ପଇତ ଖସି ଯାଉଥିଲୁ ମଟିଂ ନଈର
ସାଉଁଟି ଆଣିଲି ତୋତେ
ତୋ ଦେହରେ ମାଉଁସ ଲାଗିଲା ଜବାବ ଦେଉଛୁ ମୋତେ ।

ଛୁଞ୍ଚି ମୁନେ ମୁନେ ପର୍ବତ ଠାଳିଲ କାକ ବିନା କାହିଁ ସ୍ୱବ
ବାଳୁତ ପୁଅକୁ ଯୁବତୀ କନିଆ ସେ କି ଜାଣେ ତାର ଭାବ ?

ଜର କଲେ ହାଣ୍ଡି ମଲି
ପରର ପୀରତି ଅଢ଼େଇ ଦିନଆ ମୁହଁ ମୋଡ଼ି ଦେଲେ ଗଲି

ଜାଣିଛ ହୋଇଛୁ ବୁଢ଼ି
ଆସିବ କି ମୋର ବାଳ ବୟସ ପିନ୍ଧିବି ମୁଁ ସୁନା ଚୁଡ଼ି ।

ଫୁଲ ମାଳା ଧରି କାହାକୁ ଜପୁଛ ? କାଠୁଁକୁ ଅଙ୍ଗରେ ଚଢ଼ା
ବୟସ ଦିନରେ ନକଲୁ ଚେଡା ବୁଢ଼ୀ ଦିନେ ହେଲୁ ଚନ୍ଦ୍ରା ।

ଠାଙ୍ଗରା ମୁଣ୍ଡରେ ମହୁଣ ପାଉଆ ହେଉ କପାଳରେ ଟିକିଲି
ଠାକୁଆ ଗାଲକୁ ବାହାଡ଼ା ଦାନ୍ତ ନାକ ଛୁଣ୍ଣୀ ଠେଉଁ ରସିଲି ।

ଝିକ ଝିକ ଧାନ ସରୁ ସରୁ ଗୋଡ଼ି ବାଛୁ ବାଛୁ ଗଡ ପାହିଲା
ବାପାଙ୍କୁ କହିବ ବଳଦ ବିକିବନି ବଇଷ୍ଣବ ହେବା ନୋହିଲା ।

ଠାଣିତ ଠାଣି ବଙ୍ଗାଳୀ ଠାଣି
ଫାଲେ ରସଗୋଲାକୁ ଗିଳସେ ପାଣି ।

ଡାକୁଅଛୁ କିଏ ପୋଙ୍ଗସି ଝୁଠରେ ପିନ୍ଧିଅଛୁ ରଙ୍ଗ ପାଟ
ଯାଆନ୍ତି ପାଙ୍କୁ ଚହଲନ୍ତି ତାହାକୁ ସଳଖତ ନାହିଁ ବାଟ ।

ଢ଼ଗ ଗୃଣପଦ ଥିଲା କି ନଥିଲା ଗୀତ ଗୃଣପଦ ଥିଲା
ଯେ ଦିନୁଁ ଡେ଼ଙ୍ଗିଲା ବାପଘର ଗାଁ ସବୁତ ପାସର ଗଲା ।

ଢ଼ମଣା ପଶିଛୁ ଗାତେ
ବୋହୂ ଭୂଆସୁଣୀ ହାଟକୁ ଯିବେ ଓଢ଼ଣା ପଡ଼ିଛୁ ହାତେ ।

ଣିଙ୍କିରେ କୁଟଇ ଗୋଲମରିଚ, ମୁଁ ପାଆରେ ମାପଇ ଘିଅ
ମୋତେ କହୁଥାଉ ମୂଲିଆ ଝିଅ ତୁ କେଉଁ ଜମିଦାର ଝିଅ ।

ଢୋ଼ଲ ବାଜିଲା, ମହୁରି ବାଜିଲା, ବାଜିଲା ଯୋଡ଼ି ମହୁରି
ଗୋସ୍ତି ହାତ ପାନ ବଡ଼ ସୁଆଦ ଲୋ, ମନରୁ ଯିବନି ଭୁଲି ।

ତାଟିଆରେ ଦେଲି ଦହି
କଠ ପ୍ରତ ବାସୀ ପିନ୍ଧିବା ପାଇଁ ଧୋବଣୀ ଘାଟରେ ସହି ।

ଥୁଛାକୁ ଏତେ ମୁଦ ନାହିଁ ଗୋଡ଼ କସୃତୁ କେତେ ।
ପିଭଳ ଗୁଣାକୁ ନାକ ଟାଉଁ ଟାଉଁ ସୁନାଗୁଣା ହେଲେ ହୁଅନ୍ତୁ କେତେ ?

ଥୁଛାକୁ ରଙ୍କଣୀ ଫୁଲୁଛୁ
ଗୋଡ଼କୁ ଲୁହା ଶିଂକୁଳି, ଗାଁ ଘୃଣପାଖ ବୁଲୁଛୁ ।

ଦବତ ସ୍ୱତରେ ଘିଅ ପରଷଇ ଥାଳି ଫନ୍ଦ ଯାଏ ବୁଡ଼ି
ପର ଘର ପାନ ସୁଆଦ ଏଣିକ ମୁଁ ହୋଇଯିବାରୁ ବୁଢ଼ୀ ।

ଥାଳ ପାଠବାଭ କ୍ଷୀର ମାଗିବାର ମନୁକ ପାଶୋର ଦେଲୁରେ
ଅଢ଼ାଇ ଦିନକୁ ବଡ଼ାଇ ପୀରତ ଭଙ୍ଗି ହଟହଟା କଲୁରେ ।

ଦାନ୍ତ ବୃଣପାଙ୍କ ନଡ଼ିଆ ଗଛରେ ଚଅଁର ଢ଼ଳା ପଡ଼ିଛି
ବୁଢ଼ା ବର ବୋଲି ବାଛୁବୁ ନାହିଁଲେ ଡେଙ୍ଗାରେ ବଢି ଯାଉଛି ।

ଧଅ ଧଅ ତୁ, କନିଆ ମାର ପୁଅ ବଢୁଛୁ
ଆଜି ଗୋଟିଏ ହେଉଥିଲୁ କନିଆ ବୋପା ନାହିଁ କଲୁ ।

ନଈ ଚୂଙ୍ଗୁଡ଼ିଆ ଦଳ, ବୁଢ଼ି ବୁଢ଼ି ଆସି ଦରବୁଢ଼ୀ ହେଲ
ମୁଣ୍ଡରେ ପାଚିଲା ବାଳ
ନଈ ତଳେ ତଳେ ବାଳିଆ, ପାଚିଲା ବାଳରେ ପୁଅ ବୋଇଚ
ନାଁ ଦେଲୁ ଗୋପାଳିଆ ।

ନନ୍ଦନୁଆଣି, କଦଳୀ ଫେଣୀ, ମୋ ନନ୍ଦେର ଓଷା
ଝାଙ୍କୁଆ ଗାଲକୁ କନ ଧୂଳଧା ଖୋସି ଦେଉଥାଏ ଖୋଷା ।

ନଡ଼ିଆ ଝଙ୍ଗିଲି ଭାଉଁଆଙ୍କୁ, ଦରେ ଛନ ଛନ ବାନ୍ଧାରେ ମନ
କେମନ୍ତେ ଦେଖିବ କାଳିଆଙ୍କୁ
ନ ରଖି ଭ୍ରମର ରସିକ, ଜାଇ ଜୁଇ ଫୁଲ ପାଣିକ ପକାଉ
ଯୋଜଶୃଙ୍ଗା ମୂଳେ ବସିଲୁ ।

ପାଚିଲା ପାନ, ଚଢ଼ କରିଥିଲୁ ଛନ ଛନ
ଆଶା କରିଥିଲ ତୋତେ
କାଉକୁ ଯେମନ୍ତ କୋଇଲି ଭଣ୍ଡାଇ
ସେହିପରି କଲୁ ମୋତେ ।

ପିଙ୍କା ଖାଉ, ଖାନ୍ତ ଜଣ ପୋଡ଼ିଗଲା କହିବାକୁ ଲାଗେ ଲାଜ
ହାତ ଶକ୍ତ ହାତ ହାତ ପୋଡ଼ିଗଲା ଗୋଡ଼ଯାକ ହେଲା ଘେଜ ।

ଧୂଡ଼ୋଲି ସୁଧା,
ଦାଣ୍ଡରେ ଦେଖିଲେ କଥା ନକହୁ ବାହରେ ବଡ଼ ଶରଧା ।

ବଅସ କାଳେ ହନୁମନ୍ତ ଦଉଡ଼ା ବୁଢ଼ୀକାଳେ ହରମନ୍ଦର ଛଡ଼ା ।

ବଚନ ମଧୁର ଚଳକ ସବୁ, ସ୍ୱାମୀଙ୍କୁ ଜାଣିବ ଠାକୁର ଗୁରୁ ।

ବଡ଼ ଘର ଝିଅ କାଛୁ ଖାଏ ନାହିଁ ବୋହୂଟି ଯେ ବ୍ରହ୍ମ ମୁଖୀ
ତନ ଓଳି ତନ କଂସା ପଖାଳରେ ମୁହଁଟି ଯାଉଛି ଶୁଖି ।

ବାଡ଼ିରେ ଝଟା ପାଳଙ୍ଗ
ସଞ୍ଜୁ ଘରେ ଏକା ରହିଲେ ହେଲା ଚହଟ ଚକ୍‌କଣ ରଙ୍ଗ ।

ଭଲ ଉଙ୍ଗେଇ, ମୁଚୁକି ହସାରେ ମୋହି
ଶୁଭୁଜନ ଯେବେ ଆଙ୍କଟି କହିଲେ ପଡ଼ିଶା ଘରରେ ରହି ।

ଛଲୁଅ ମୁହଁକୁ ଗାଲୁଆ ଧରିଛୁ ଖାଲୁଅ ହୋଇଛୁ ପେଟ
ଭୋଜନ ପାଇଲେ ଯୋଜନ ଦଉଡ଼େ ମିଛକୁ ବହିଛୁ ଜଟ ।

ଘଡ଼ କାମକୁ ପାରିବ ନାହିଁଲେ ଅଣ୍ଟାରେ ହୋଇଛି ବାତ
ଖଟିଆ ଝଣ୍ଡିଏ ଦଥଲେ ମା ବସି ଖୋଳୁଥାଏ ଗାତ ।

ନଖ ଦେଇବ, ସ୍ତ୍ରୀ ଦେଖି ଜାଣ ଦାନ୍ତ ଯହିବ, ଟୋକାଟାକୁ ବୁଢ଼ା ବାଣ୍ଡ ହୋଇବ ।

ମଉଳରେ ଥାଇ, ମଳୁ ଘରୁ ଝାଉ, ଝିଙ୍କାକର ଝାଉ ଡେଲୁଲି
ମହାଳ୍ପ ସାହିରେ ଡ଼ାକ ପଡ଼ିଗଲା, କାହିଁଗଲୁ କଲେ ଚତୁରି ।

ମନକୁ ଆସେ, କଥା ପଦକରେ ଛ ଥର ଭୁଷେ, ଅଧପା ପାଟିରେ ପାନ
ଯତ୍ରୁବେଳେ ହୁଏ ଚଦର ଚବର (ବଜର ବଜର) ନମାନଇ ବଡ଼ ସାନ ।

ମାଲେ ମଲା, ଅପିଲା କଲା, ଗାଁ ଦୃଶପଟେ ବୁଲା ଅଇଲା
କେହି ନ କହିଲେ ବସ ବୋଲ ।

ମାଛ ମୁଁ କାଟିଲା ଝଣ୍ଡ ଝଣ୍ଡିକା ମହି ଝଣ୍ଡି କଲା ଭଜା
ଭୁ ମତେ କହୁ ବଟଣୀ ନାଗ, ସରୁଆ ସଜା, ପରବାସ କରି ନଯା ।

ଯାହାଙ୍କର ବାପ ମୂଲ ଲାଗୁଥିଲା ଗାଁ କୋଠିଆଙ୍କ ମେଲରେ
ତା ଘର ପୁଅ ପୁଆଣି ଚଢ଼ିଲା ପାଦ ଲାଗୁନାହିଁ ତଳେରେ ।

ଖଣ୍ଡୀ କୁଣ୍ଡୀ ଆହାରେ ଦଇବ
ଦାଢ଼ିଆ ଘଇତା ନୋହିବ
ଦାଢ଼ୀ ସରସର ମୁହଁରେ ଘଷିଲେ
କୋଉ ରଇଜାଲୀ ସହିବ ।

ଲବଙ୍ଗ ଲଟା, ଫୁଲ ଚହଟା, ଫୁଲ କେଉଁଦିନ ଫୁଟିବ ?
ଅନାଇ ବସି ବୟସ ଗଲା, କାନ୍ତ କୋଉଦିନ ଆସିବ ।

ଲଲିଆ ଝୋକେଇ ପୁଂଜି ପୁଂଜିକା ଶୋଲ ଶାଗ ତୋଳିବାକୁ
ବାପା ଦେଇଛନ୍ତି ବୁଢ଼ା ବରକୁ ଚୂଳ ଧରି କାଢ଼ିବାକୁ ।

କେଉଟିଆ ଶାଗ ପଟାଳି ପଟାଳି ଅଧେ ମାଡ଼ିଗଲା ଝିଅ
ଝିଅ ଶୁଣ ଭୂମି କଥା ଫୁଲ ପରି ବାସି ଉଠିବ ଗୋ ରହ ।

ଲେଙ୍ଗୁଟି ପିନ୍ଧାକୁ ପାଗପଟୁକା ଗୋଲାମକୁ ବଡ଼ ପଣ
ମାଟିଖିଆକୁ ଚଟୁ ଘୋଡ଼ା ଏ ବଡ଼ ବିଡ଼ମ୍ବନ ।

ଶାଶୁ ମାରୁଥାଏ ବୋହୂକୁ , ବୋହୂ ସବାଖାଇ କାହାକୁ ମାରିବ
ମାରୁଥାଏ ଚୂଲି ମୁହଁକୁ ।

ଶିଆଳୀ ଖାଇଲେ ମୁଣ୍ଡବାଳ ଯାକୁ ବିଆଳି ଖାଇଲା ବଢ଼ି
ଜନଆଁ ମାଇପ କାହିଁକି ଅଂଶିବ ବାପ ଘରେ ହେଲା ବୁଢ଼ୀ ।

ଶୁଣ୍ଡୀ ଦୁଆରେ ଦୁଧ ପିଇଲେ ସମସ୍ତେ କହିବେ ମଦ
ଗଉଡ଼ ଦୁଆରେ ମଦ ପିଇଲେ ସମସ୍ତେ କହିବେ ଦୁଧ ।

ଷାଠିଏ ହଞ୍ଚାର ଅଲକା ତାକୁ ଦେଖି ଦେଖି ହେଲି ଜଲକା
ସନ୍ତ୍ରିଆରେ ଲଡ଼ବଡ଼, କାହା ଗୋଡ଼ ତଳେ ଶୋଇଲୁ ସନ୍ତ୍ରିଆ
ହଳଦୀରେ ହେଲୁ ଗର ଗର ।

ସାଥ ଗଲା ସାଇଁ ସାଇଁ
ଯେଉଁ ନାଗଶ୍ୱର ଗେରସ୍ତ ନାହିଁ ବାଙ୍କ ଜୁଡ଼ା କାହିଁ ପାଇଁ ।

ସୋରଷ ଫୁଲର ସ୍ୱଗ
ତୋ ପାଇଁ ଗୋଷ୍ଠ ନନ୍ଦର ପନ୍ଦର ଟିକେ ମିଳେ ନାହିଁ ବାସ ।

ହସ ଗୋଟା କେତେ ହସିଲି ହସ ରହିଲା ନାହିଁ
ଯେଉଁ ହସ ଲାଗି ବୋଲଣା ସ୍ୱାଦ ପାଇଲେ ନାହିଁ

ହାଟରେ ରସିକ ରସିଲୁ
ମଧୁମାଳତୀକୁ ଛାଡ଼ି ଦେଇ ଯାହା ପୋକଶୁଙ୍ଘା ବଣେ ପଶିଲୁ ।

କ୍ଷେତକୁ ସୁନ୍ଦର ବାଡ଼ ଫଡ଼ିଲ
ଦେହକୁ ସୁନ୍ଦର ବୁଦ୍ଧି ଅକଲ ।

—*—

## (ଗ)

# ପ୍ରବାଦ ଓ ପ୍ରବଚନ

ଅନ୍ଧ ହାତେ ରତ୍ନ ମୁଦ ।
(ଅଯୋଗ୍ୟ ବ୍ୟକ୍ତି ହାତରେ ମହା ମୂଲ୍ୟବାନ ବସ୍ତୁ ଅର୍ପଣ କରିବା)

ଅନ୍ଧ ହାତୀ ଦେଖିବା ନ୍ୟାୟ ।
(କୌଣସି ବିଷୟରେ ଅଂଶ ମାତ୍ର ଜାଣି ପୂର୍ଣ୍ଣ ବୋଲି ବିଚାରିବା)

ଅନ୍ଧାରରେ ବାଡ଼ି ବୁଲେଇବା । (ଅନିଶ୍ଚିତତା ପଛରେ ଦଉଡ଼ିବା)

ଅଲପୂଆର ବାରବାଟି ଗୃଷ । (ଅଳସୁଆର ଗାଲୁଗିରିରେ ବୃଥା ପ୍ରୌଢ଼ି ପ୍ରଦର୍ଶନ)

ଅଖ ବୁଲୁଥାଏ ଚକ ବୁଲୁଥାଏ ବୁଲିପଡୁଥାଏ ପଦ୍ମ
ଯିପାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହ୍ୟ ।
(ଭାଗ୍ୟର ପରିବର୍ତ୍ତନ ଅନୁସାରେ ମନୁଷ୍ୟକୁ ସୁଖ ଦୁଃଖ ଭୋଗ କରିବାକୁ ପଡ଼େ)

ଅଭାଗ୍ୟକୁ ଏପରି ଘଟେ, ଅଣ୍ଡି ସୁନା ପିଢ଼ିଲ ପାଲଟେ ।
(ଭାଗ୍ୟ ଖରାପ ପଡ଼ିଲେ ହସ୍ତଗତ ଧନ କୁଆଡେ ଉଡ଼ିଯାଏ)

ଅଟକ୍ରା ନାରୀ ବାପ ଘର ଯାଏ, ମନ ଫୁଲିଣିଆଁ ଗୀତ ଗାଏ ।
(ପିଲା ଛୁଆର ଜଞ୍ଜାଳ ନଥିବା ସ୍ତ୍ରୀ ନିମନ୍ତେ ଏହା ପ୍ରଯୁଜ୍ୟ)

ଅଲାଜୁକ ଗଲ ମରିବାକୁ, ତାକୁ ଠାକୁର ଗଲେ ଧରିବାକୁ ।
(ମରିବା ପାଇଁ ଧମକ ଦେଉଥିବା ବ୍ୟକ୍ତିପ୍ରତି ଛଲୋକ୍ତି)

ଅବୁଝା ରାଜାକୁ ପାଳଚୁଣ୍ଡା ମନ୍ତ୍ରୀ ।
(ଯେଉଁଠି ରାଜା ଓ ମନ୍ତ୍ରୀ ଉଭୟେ ଅଯୋଗ୍ୟ)

ଅତି ପରିଚୟେ ଗୌରବ ନଷ୍ଟ । (ଅତ୍ୟଧିକ ଆତ୍ମୀୟତା ସମ୍ମାନହାନୀ କାରକ)

ଅତି ଭକ୍ତି ଚୋରର ଲକ୍ଷଣ । (ଅତିଶୟ ବିନୟ ଇତରତାର ପରିଚାୟକ)

ଅତି ଲେମ୍ବୁ ଚପୁଡ଼ିଲେ ପିତା ।
(କୌଣସି ବିଷୟରେ ମାତ୍ରା ଅତିକ୍ରମ କରିବା ଗର୍ହିତ)

ଅତି ସିଆଣିଆ କାଉ ଗୁହ ଖାଏ ।
(ଅତି ଚାଲାକ ବ୍ୟକ୍ତି ଶେଷକୁ ଠକାମିରେ ପଡ଼େ)

ଅତି ଅଲଜୁକ ନାଚ ନାଚ ଯାଏ ।
(ସଙ୍କୋଚ ତ୍ୟାଗ ନକଲେ ନୃତ୍ୟରେ ସଫଳତା ହାସଲ କରିହୁଏ ନାହିଁ)

ଅଠା କାଠିରେ ପଡ଼ିବା (ବିଷମ ବିପଦର ସମ୍ମୁଖୀନ ହେବା) ।

ଅଧା ନଈକୁ ପେଲି ଦେବା ।
(କୌଣସି ଲୋକକୁ ଅତର୍କିତ ଭାବରେ ବିପଦମୁହଁକୁ ଠେଲି ଦେବା)

ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ ।
(ଅନ୍ୟାୟ ଉପାୟରେ ଅର୍ଜିତ ଧନ କ୍ଷଣସ୍ଥାୟୀ)

ଅରକ୍ଷିତକୁ ଦଇବ ରାଖା (ଅସହାୟର ସହାୟ ଭଗବାନ) ।
ଅଣ୍ଟାରେ ନାହିଁ ଧନ, ପୁଅ ବାହା କରିବାକୁ ମନ (ଦରିଦ୍ର ବ୍ୟକ୍ତି ଉଚ୍ଚ ଆଶା ପୋଷଣ କରିବା) ।

ଅବସ୍ଥା ବାରଣ୍ଡା ଦକଡ଼ା । (ଅତି ଅସହାୟ ଅବସ୍ଥା)

ଅକାଳେ କୁସୁମ ନାସ୍ତି । (ବିପଦ ସମୟରେ ଶୁଭାଶୁଭ ବିଚାର କରାଯାଏ ନାହିଁ)

ଅଗସ୍ତି ଦେଲେ ଦାନ, କଣା ଗୁଆକୁ ପଚ୍ଚ ପାନ ।
(କୃପଣ ବ୍ୟକ୍ତିର ବଦାନ୍ୟତା ସମ୍ପର୍କରେ ଆକ୍ଷେପୋକ୍ତି)

ଆଳେ ସଖି, ଆପଣା ମହତ ଆପେ ରଖି ।
(ନିଜର ସମ୍ମାନ ନିଜ କ୍ରିୟାକଲାପ ଉପରେ ନିର୍ଭର କରେ)

ଆ ବଳଦ ମୋତେ ବିନ୍ଧ । (ଜାଣି ଶୁଣି ବିପଦକୁ ବରଣ କରିବା)

ଆଖିରେ ଧୂଳି ପକାଇବା (ପ୍ରତାରିତ କରିବା) ।

ଆଲ୍ଲା ଦେଅନ୍ତି ଛପର ଫାଡ଼ି ଦେଅନ୍ତି ।
(ଭଗବାନ ଦୟା କଲେ ମଣିଷର ଦୁଃଖରହେ ନାହିଁ)

ଆଶା କରିଥିଲି ମଛୀଟି, ମଛୀ ଦୁଅ ନେଇ ଦେବ କାଲିକି (ଅନିଶ୍ଚିତ ଆଶା) ।

ଆମ୍ବ ଶିମ୍ବ ଅଢ଼େଇ ଦିନ, ଗ୍ରନ୍ଥ ଦନ୍ତକଶ ମଣିଷ ଚିହ୍ନ (କ୍ଷଣିକ ସମ୍ପଦରେ ଭୁଲି ନଯାଇ ପ୍ରକୃତ ମଣିଷ ଚିହ୍ନିବା ପାଇଁ ଉପଦେଶ) ।

ଆମ୍ବ ଫଟେ ବାସ, କଥା ନକହିଲେ ମଣିଷ । (ସମ୍ପଦର ପାଚୁଣି ହେତୁ ଗନ୍ଧ ପ୍ରକାଶ କରିବା) ।

ଅଳୋ ମଜ୍ଜା ଜନ୍ତ ଫଳସା । (ଅର୍ଥ ବିନା କୌଣସି କାର୍ଯ୍ୟ ସିଦ୍ଧି ଅସମ୍ଭବ)

ଅଖୁ କିଆରିରେ ପଶିବା । (ବନ୍ଧୁକୁ ଏକ ବାଛୁବାର ଅବସ୍ଥା)

ଆଗତ ଚଢ଼େଇକୁ ବେପର ବନ୍ଧ ।
(ଅନିଶ୍ଚିତତା ଫଳ ପ୍ରାପ୍ତି ପାଇଁ ଆଗରୁ ପ୍ରସ୍ତୁତ ହେବା)

ଆହାର ମୁହଁରେ ପାହାର ।
(କୌଣସି ବ୍ୟକ୍ତିକୁ ପ୍ରଥମେ ଆହାର ଦେଇ ପରେ ଛଡ଼େଇ ନେବା)

ଆଜି ଗହଳରେ ଭଡ଼ଲେ ନଶାପ, ଘାଟରେ କୁମ୍ଭୀର ଖାଏ ।
(ଅବୁଝା କଣ୍ଠ ସ୍ୱଜାତିର ବନ୍ଧୁର)

ଈଶ୍ୱର କଲେ ଦୁବ ଦାରୁ ହୁଏ ।
(ଭଗବାନଙ୍କ କୃପା ହେଲେ ଶ୍ରେଷ୍ଠ ବଡ଼ରେ ପରିଣତ ହୁଏ)

ଉଡ଼ିଗଲା ଚଢ଼େଇର ପର ଗଣିବା । (ଅତି ଚତୁର) ।

ଉଲୁରୁ ଖୁଲ ମୁକୁଳା ବାଳ, ଏହା ନରହିଲ ବଳୁଡ କାଳ ।
(ପରିବର୍ତ୍ତିନ ଅବ୍ୟବସ୍ଥାଣୀ)

ଏ ମନ ପାଞ୍ଚୁଥାଇ ଯାହା କାଳେ ପ୍ରାପତ ହୁଏ ତାହା ।
(ଇଚ୍ଛାନୁସାରେ ଫଳପ୍ରାପ୍ତି ହେବା)

ଏଣୁ ମାରିଲେ ବ୍ରହ୍ମ ହତ୍ୟା, ତେଣୁ ମାରିଲେ ଗୋ ହତ୍ୟା ।
(ସନ୍ଧକ୍ଷଣରେ ପଡ଼ିବା)

ଏଣ୍ଡୁଅ ଦଉଡ଼ ସିଜୁ ବାଡ଼କୁ । (ନିଜର ସାମର୍ଥ୍ୟ ଅନୁସାରେ କାମ କରିବା) ।

ଓଢ଼ଣା ପଡ଼ିଛି ନାକ ଯାଏଁ ଶବଦ ଶୁଭୁଛି ଚଉପାଢ଼ିକ ।

(ଯେତେ ଲୁଚେଇଲେବି ଅସଲ ରୂପ ପ୍ରକାଶ ପାଏ)

ଓଧ ସଙ୍ଗେ ବଣଭୂଆ ବାଇ ।                    (ସମଜାତୀୟ ପଦାର୍ଥର ମିଳନ)

ଓଲୁଅ କହୁଇ ବଣ ଯାବୁକି, ତୁ ମୁଁ ଯିବା ବାହାଘରକୁ ।

(ସମଜାତୀୟ ପଦାର୍ଥ ଏକାଠି ହେବା)

ଔଷଧ ସଙ୍ଗରେ ତାଟିଆ କାମୁଡ଼ିବା ।

(ଏକର ଦାଉ ଅନ୍ୟ ଉପରେ ସାଧିବା)

କୁସୁମ ପରଶେ ପଟ୍ଟ ନେତ୍ରରେ ।

(ବଡ଼ର ଆଶ୍ରୟରେ ଶ୍ରେଷ୍ଠ ମୂଲ୍ୟଲାଭ କରିବା)

କଂସାରି ଘରର ପାରି, କୁଳ ଢାଉଁ ଢାଉଁ ଡ଼ରି ।

(ବଡ଼ ଘଟଣାରେ ଯେ ଅଭ୍ୟସ୍ତ, ତା ପ୍ରତି ଶ୍ରେଷ୍ଠ କିଛି ନୁହେଁ)

କହିଲେ କୁଳ କୁଟୁମ୍ବକୁ ଲାଜ, ନକହିଲେ କୁଳ ବୁଡ଼ିଯାଉଛି ।

(ଘଡ଼ି ସନ୍ଧିରେ ପଡିବା)

କହି ଦେଉଥାଇ ପରକୁ, ବୁଦ୍ଧି ନ ଆସଇ ଘରକୁ ।

(ଅପର ପ୍ରତି ଯେତେ ସଜାଗ ନିଜ ପ୍ରତି ସେତେ ନୁହେଁ)

ଧରି ନଜାଣିଲେ ସୂତା ଅଡ଼ୁଆ ।

(ଏକ ସ୍ୱଭାବରେ କାମକୁ ନତୁଲାଇଲେ କାମ ନଷ୍ଟ ହୁଏ)

କାଲ ଠାର କାଲ ମା ଜାଣେ ।

ସମପ୍ରକୃତିର ଲୋକକୁ ସମପ୍ରକୃତିର ଲୋକ ଜାଣେ) ।

କାନ୍ଦରେ ପଡ଼ିଲେ ବଜାଇ ଶିଖନ୍ତି ।

(ଦାରିଦ୍ର୍ୟ ଆସିଲେ ତାହା ତୁଲାଇବା)

କୁଳ ବୁଡ଼ିଲା ବେଳକୁ ଘୋଡ଼ା ମୁହାଁ ପୁଅ ଜନ୍ମ ହେବା ।

(କୁଳ ନାଶ ବେଳକୁ ଅଯୋଗ୍ୟ ସନ୍ତାନ ଜାତ ହେବା)

କେଉଁଠି ହାତୀ ଗଳିଯାଉଛି, କେଉଁଠି ପିମ୍ପୁଡ଼ି ଗଳୁ ନାହିଁ ।

(ବଡ଼ ବଡ଼ ଦୋଷ ଧର୍ତ୍ତବ୍ୟ ନୁହେଁ ଶ୍ରେଷ୍ଠ ଧର୍ତ୍ତବ୍ୟ)

ଖାଇ ବସିଲେ ନଇ ବାଲି ସରେ ।
(ଟିକିଏ ଟିକିଏ ହୋଇ ସବୁ ଶେଷ ହୋଇଯିବା) ।

ଖଡ଼ ଗଦାରେ ପଦ୍ମ ଫୁଟିବା ।
(ଅଯୋଗ୍ୟରେ ଯୋଗ୍ୟର ସମ୍ଭାବନା)

ଖଜୁରି ଗଛର କି ବର୍ଣ୍ଣିବି ଗୁଣ, ମୂଳରୁ ପାହାଚ ପାହାଚ ।
(ବହୁ ଦୋଷ ଦୁର୍ବଳତା ପୂର୍ଣ୍ଣ)

ଖାଇବ ପିତା ଗାଇବ ଗୀତା, ତେବେ ସେ ହୋଇବ ଜଗତ ଜିତା ।
(ପିତା ଯେପରି ଶରୀରର ହିତକାରକ, ଗୀତା ସେହିପରି ନୀତି ନିୟମ ଦ୍ୱାରା ଚରିତ୍ର ସୁଧାରକ)

ଖୋଳ ପରବତ ମାରି ମୂଷା ।
(ସାମାନ୍ୟ ପଦାର୍ଥ ପାଇଁ ଦୁଷ୍କର କାମ କରିବା)

ଖାଇବା ପତ୍ରରେ ଧୂଳି ପକାଇବା ।
(ଅନିଷ୍ଟ ସାଧନ କରିବା)

ଗାଁ କନିଆ ସିଙ୍ଘାଣି ନାକୀ ।
(ନିକଟରେ ଥିବା ପଦାର୍ଥର ମୂଲ୍ୟ ଜାଣି ହୁଏନାହିଁ)

ଗହମ ଗୋଟି ଗଣିତା ।
(ସଠିକ୍ ହିସାବ ରଖିବା)

ଗାଁ ପରିମଳ ଧୋବା ତୁଠରୁ ।
(ଧୋବା ତୁଠ ଗାଁର ନିର୍ମଳ ଓ ଅନିର୍ମଳ ସଂପର୍କରେ ସୂଚାଇ ଥାଏ)

ଗୋଟିଏ ମାଘରେ ଶୀତ ଯାଏ ନାହିଁ ।
(ପରିବର୍ତ୍ତନଶୀଳତା ଅବଶ୍ୟମ୍ଭାବୀ)

ଗୋଟିଏ ହାତରେ ତାଳି ବାଜେ ନାହିଁ ।
(ଉଭୟ ପକ୍ଷ ଯୋଗୁଁ କାର୍ଯ୍ୟ ସାଧିତ ହେବା)

ଗୋଦରିଲେ ତଳକୁ ଅନା ।
(ବାଛି ବିଚାରି କାମ କରିବା)

ଗୋଦସ୍ତ କୋଡ଼େ ଯେତେ ମାଡ଼େ ସେତେ ।

(ଅନୁପଯୁକ୍ତ ବ୍ୟକ୍ତିକୁ ଧାର୍ଯ୍ୟ କରେଇବା)

ଗୁଣ ଚହ୍ନେ ଗୁଣିଆ, ସୁନା ଚହ୍ନେ ବଣିଆ ।

(ଉପଯୁକ୍ତ ବ୍ୟକ୍ତି ଉପଯୁକ୍ତ ପଦାର୍ଥର ମୂଲ୍ୟ ଜାଣେ)

ଘରେ ନାହିଁ ଲେମ୍ବୁ ଲୁଣ, ସଭାରେ ବଖାଣେ ଛଣ ଚଅଣ ।

(ନିଜକୁ ଢେକ ଝଙ୍କ ଥୋଇବା)

ଘରୁ ଖାଇ ଘୋଡ଼ା ଆଗେ ନେଉଁବା ।

(ନିଜ ହାତରୁ ଅଯଥା ଖର୍ଚ୍ଚ କରିବା)

ଘଇତା ପଛେ ମରୁ ହଇତୁଣୀ ରାଣ୍ଡ ହେଉ ।

(ନିଜର କ୍ଷତିରେ ଅପରର ଦାଉ ସାଧିବା)

ଘଡ଼ିକେ ଘୋଡା ଛୁଟିବା ।

(ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ)

ଘର ବୁଡ଼ି ପାଣି ଆଣୁଏ ।

(ନିସ୍ତିନସ୍ତାନ୍ତ ହେବା)

ଘୁଷୁରି ପ୍ରକୃତି ପଙ୍କେ ଲୋଟଇ, ମଣିଷ ପ୍ରକୃତି ମଲେ ଛୁଟଇ ।

(ପ୍ରକୃତି ଅପରିବର୍ତ୍ତନୀୟ)

ଘରକୁ ସୁନ୍ଦର ଘରଣୀ, ନଈକୁ ସୁନ୍ଦର ତରଣୀ ।

(ଉପଯୁକ୍ତ ବସ୍ତୁ ପରସ୍ପରର ଶୋଭାବର୍ଦ୍ଧକ)

ଚିଙ୍ଗୁଡ଼ି ଚପିଲେ ମୁଣ୍ଡରେ ବସ ।

(ସାମାନ୍ୟ ବ୍ୟକ୍ତିର ସମାନ୍ୟତାଦ୍ଭୁତ ଆକ୍ଷେପ)

ଚକେ ଗଲେ ବାର ହାତ ।

(ସମସ୍ତ ପରିବର୍ତ୍ତନଶୀଳ)

ଚେଇଁ ଶୋଇଥିବ ଯିଏ, ତାକୁ ଉଠାଇବ କିଏ ?

(ମିଥ୍ୟା ଛଳନା କରିବା)

ଚୋରର ମନ ଗଣ୍ଠିରେ ।

(ପ୍ରକୃତ ଅନୁଯାୟୀ ରୁଚି)

ଚୋରର ମୁହଁ ଟାଣ ।

(ଅପରାଧି ବ୍ୟକ୍ତିର ବୃଥା ଆସ୍ଫାଳନ)

ଚୋରର ଦରକ ସବୃଦନେ ଆଲୁଅ ନୁହେଁ ।

(ସବୃଦନ ଏକାପରି ଯାଏ ନାହିଁ)

ଚୋଟ ପାପର ବଡ ଭୟ ।

(ସାମାନ୍ୟର ଚୋଡ଼ ବେଶୀ)

ଛେଳି ଗୋଡ଼ରେ ଧାନ ମଳା ।

(ଅନୁପଯୁକ୍ତତା ପ୍ରକାଶ)

ଛ' ଟଙ୍କାର ଘୋଡ଼ାକୁ ନ' ଟଙ୍କାର ଦାନା ।

(ଅଳ୍ପକ ପାଇଁ ବହୁତ ବ୍ୟୟ କରିବା)

ଜନମ, ମରଣ, ବରଷା, ଏହା କହି ନପାରେ ପୁରୁଷ ।

(ଜନ୍ମ, ମୃତ୍ୟୁ, ବର୍ଷା, ସମ୍ପର୍କରେ ଅନିଶ୍ଚିତତା)

ଜଗତ ଉପରେ ବସିଲେ କୁଆ,

ଗରୁଡ଼ ବୋଲିକି ହୋଇବ କୁହା ?

(ନୀଚ ବ୍ୟକ୍ତି ଉପରକୁ ଗଲେ ତାର ପ୍ରକୃତି ଛାଡ଼େନା)

ଝିମିଟି ଖେଳରୁ ମହାଭାରତ ।

(ସାମାନ୍ୟରୁ ବଡ଼ର ସୃଷ୍ଟି ହୁଏ)

ଝିଣ୍ଟିକା ମାରି ବଣି ପୋଷିବା ।

(ଗୋଟିକ ପାଇଁ ଅନ୍ୟର ଅନିଷ୍ଟ ସାଧନ କରିବା)

ଟାଣ କରୁଥାଇ ମାଇପ ଆଗେ

ଲାଲ ପାଗ ଦେଖି ଘରକୁ ଭାଗେ ।

(ଭୟାଳୁ ପ୍ରକୃତିର ଲୋକ)

ଠେକର ତେଲ ଠେକରେ ଥାଉ
ପୁଅର ବାଳ ନଖୁରା ନୋହୁ ।

(ଅତି କୃପଣ)

ତେଙ୍ଗା ମୁଣ୍ଡରେ ଠେଙ୍ଗା ।

(ମୁରବୀ ଉପରେ ଦୋଷାରୋପ କରିବା)

ଢୋଲ ଭିତରେ ମୂଷା ।

(ବିପଦର ସମ୍ମୁଖୀନ ହେବା)

ଢେଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ ।

(ପ୍ରକୃତ ଗୁଣ ହୁଏ ନାହିଁ

ତପେ ବର କି କୋପେ ବର ।

(ତପସ୍ୟା ଦ୍ୱାରା ବା କୋପ ଦ୍ୱାରା କାର୍ଯ୍ୟ ହାସଲ)

ତାତଲ ପାଣିରେକି ଘର ପୋଡେ । (ଉପଯୁକ୍ତ ପଦାର୍ଥର ଅଭାବ)
ତୁଳସୀ ଦୁଇ ପତ୍ରରୁ ବାସେ, ବଢୁଆତ ଦୁଇ ପତ୍ରରୁ କୁଣ୍ଡାଇ ହୁଏ ।

(ଜନ୍ମରୁ ପ୍ରକୃତ ପ୍ରକାଶ ପାଏ)

ତେଲ ହଳଦୀ ସାରେନା, ପୁଅକୁ ନଖୁରା କରନା ।

(ଅତି କୃପଣତା ପ୍ରକାଶ ପାଇବା)

ଥିଲେ ଚିରା କନା ହଜିଲେ ମାଠ ।

(ପାଖରୁ ଦୂରେଇଯିବା ପଦାର୍ଥର ଦାମ ଅଧିକ)

ଦୃଢ଼ ତରେ ମୂଢ଼ ତରେ
ମଝି ମଝିଆ ବୁଡ଼ି ମରେ ।

(ମଧ୍ୟବିତ୍ତ ଶ୍ରେଣୀର ଅବସ୍ଥା ପ୍ରତି ବ୍ୟଙ୍ଗୋକ୍ତି)

ଦୂର ପରବତ ସୁନ୍ଦର, ଦୂର ବନ୍ଧୁ ସୁନ୍ଦର ।

(ଦୂର ପଦାର୍ଥର ମୂଲ୍ୟ ଅଧିକ ।

ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ସେଣିକି ଯାଇ ।

(ମଣିଷ ଦଇବର ଅଧୀନ)

ଦୀପ ତଳ ଅନ୍ଧାର ।

(ଭଲ ମନ୍ଦ ଲାଗି ରହିବା)

ଦେଶକେ ଫାଙ୍କ, କଇକେ ବାଙ୍କ ।

(ବିଭିନ୍ନ ଦେଶରେ ଅଂଶିର ପରମ୍ପରା ଭିନ୍ନ ଭିନ୍ନ)

ଦାଲୁଘର ହସିବା କାନ୍ଦିବା ସମାନ ।

(ସମପ୍ରକାରତା)

ଦେ କଉଡ଼ି ଖା ପିଠା, ଏଥିପାଇଁ କଥାଁ ଦାନ୍ତ ନକୁଟା ।

(ପରିଶ୍ରମ ବିନା ଅନ୍ୟକିଛୁ ନାହିଁ)

ଦୁଆରେ ଚୁଲି, ଯାଉଛୁ ଭୁଲି । [ସଚେତନତା ହୀନ]

ଧୀର ପାଣି ପଥର କାଟେ ।

(ଯତ୍ନ ସମ୍ଭାଳି କାମ କଲେ ଅସାଧ୍ୟ ସାଧିତ ହୁଏ)

ଧୁଆ ମୂଳା ଅଧୁଆ ମୂଳା ସମାନ ।

(ଭଲ ଭେଲ ସମତୁଲ କରିବା)

ନ ଦେଖିଲି ଓଉ ଛଫଡ଼ା ।

(ନଦେଖି ଥିବା ପଦାର୍ଥର ବିକୃତ କରି କହିବା)

ନାଚ ନଜାଣି ଅଗଣାର ଦୋଷ ।

(ଅନୁପଯୁକ୍ତଙ୍କର ଦୋଷ ବାଛିବା)

ନଈ ନ ଦେଖୁଣୁ ଲଙ୍ଗଳା ।

(ଆଗରୁ ସାବଧାନ ହୋଇଯିବା)

ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ ।

(ଆଦୌ ନଥିବା ଅପେକ୍ଷା କିଛି ଥିବା ଭଲ)

ନାମ୍ ବଡ଼ା, ଦର୍ଶନ ଥୋଡ଼ା ।

(ବିନା କାରଣରେ କାର୍ଯ୍ୟ ଅସମ୍ଭବ)

ନଈ ଶୁଖିଲେ କି କରିବ ନାଆ

ଧନ ଶୁଖିଲେ କି କରିବ ମା ।

(କାରଣ ବିନା କାର୍ଯ୍ୟର ଅସାରତା)

ନାଟର ଗୁରୁ ଗୋବର୍ଦ୍ଧନ । (ସବୁର ମୂଳ)

ପୋଷା ପୁଅ ଗୁଣ୍ଡା ଭୁଅ ।
(ପୋଷିଲା ପୁଅର ଅନୁପଯୁକ୍ତତା)

ପତର ଗୋଟେଇ ଆସି ତୋଟା ମୂଲ କରିବା ।
(ସାମର୍ଥ୍ୟ ବାହାରେ ଆଲୋଚନା କରିବା)

ପେଟ ପୋଷେ ନାହିଁ ଦୋଷ । (ଜୀବିକା ନିର୍ବାହରେ ଦୋଷ ଧର୍ତ୍ତବ୍ୟ ନୁହେଁ)

ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ । (ସାମାନ୍ୟ ବିଳମ୍ବରେ ବହୁତ ହାନି)

ପାପ ଧନ ପ୍ରାୟଶ୍ଚିତରେ ଯାଏ । (ଅନ୍ୟାୟ ମାର୍ଗରେ ଅର୍ଜିତ ଧନ ସ୍ଥାୟୀ ନୁହେଁ)

ପାଣି ଯୁଆଡ଼େ, ଛତା ସିଆଡ଼େ । (ସୁବିଧାବାଦୀ)

ପଞ୍ଚ ମୁଣ୍ଡେ ହର । (ପାଞ୍ଚ ଜଣରେ ଠିକ୍ ବିଚାର)

ଫଳିଲା ଗଛ ଟୋପଡ଼ ସହେ । (ସହିଷ୍ଣୁ ଲୋକ)

ବଡ଼ ଲୋକଙ୍କୁ ଉତ୍ତର ନାହିଁ, କି ମୂର୍ଖକୁ ନିଶୁଣି ନାହିଁ ।
(ବଡ଼ ଲୋକର ଦୋଷ ନଧରିବା)

ବହୁତ ଲୋକରେ ମୂଷା ମରେ ନାହିଁ ।
(ବହୁ ବ୍ୟକ୍ତିର ସମ୍ମିଳନରେ କାର୍ଯ୍ୟ ସାଧନ ହୁଏ ନାହିଁ)

ବାହାଘର ଦିନ ବାଇଗଣ ରୁଆ । (ଆଗରୁ ସଜାଗ ନହେବା)

ବୋଝ ଉପରେ ନଳିତା ବିଡ଼ା । (ବିପଦ ଉପରେ ବିପଦ)

ବାଘର ଘରେ ମିରଗ ନାଚ । (ବଡ଼ର ଅନୁପସ୍ଥିତିରେ ଶ୍ରେଷ୍ଠର ଆସ୍ଫାଳନ)

ବିଛା ମନ୍ତ୍ର ନଜାଣି ସାପ ଗାତରେ ହାତ ପୁରାଇବା ।

ବସି ଖାଇଲେ ନଈ ବାଲି ସରେ । (ଅଳସୁଆର ସବୁ ନିଃଶେଷ ହୋଇଯାଏ) ।

ବେଡ଼ ଉପରେ କୋରଡ଼ା । (ବିପଦ ଉପରେ ବିପଦ ମାଡ଼ି ବସିବା)

ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା ।
(ଯେ ଯାହା ନୁହେଁ ତାହା ଆଶା କରିବା)

ଭମଲ ଯାକତ ବାଲ କେତେ ବାଛିବ ବାଛ । (ତ୍ରୁଟିପୂର୍ଣ୍ଣ)

ବେଲ ପାଚିଲେ କାଉର କି ଯାଏ । (ଅସାମର୍ଥ୍ୟ ପ୍ରକାଶ କରିବା)

ବୁଢ଼ା ବଡ଼ କୃପଣ, ପଖାଳ ଭାତରେ ନଖାଏ ଲୁଣ । (ଅତି କୋଚଟ ପଣିଆ)

ଭରଜା ଲମ୍ପଟେ ଧାନ ଶଳାକୁ ଦଣ୍ଡବତ ।
(ବଡ଼ର ପ୍ରାପ୍ତିରେ ଶ୍ରେଷ୍ଠକୁ ସମ୍ମାନ ଦେବା)

ଭିନେ ହେଲ ଭାଇ ପଡ଼ଶା ଘରକୁ ଯୋଗ୍ୟ ନୁହେଁ ।

(ଭିନ୍ନ ହେଲ ଭାଇ ଭାଇ ଭିତରେ ଶତ୍ରୁତା)

ଭୀମର ବଳ କୁନ୍ତୀକୁ ଜଣା । (ମା' ପୁଅର ବଳ ଜାଣେ)

ମାରନେଲା ମହାପାତ୍ରେ ଗୁହ୍ଣିଛନ୍ତି ଜଳକା । (ଧୂର୍ତ୍ତତା ଆଚରଣ)

ମହରଗଡ଼ୁ ଆସି କାନ୍ତାରରେ ପଡ଼ିବା ।

(ସାମାନ୍ୟ ବିପତ୍ତିରୁ ଯାଇ ମହାବିପଦର ସମ୍ମୁଖୀନ ହେବା)

ମାନିଲେ ଦେଉଁ ନମାନିଲେ ପଥର । (ବିଶ୍ୱାସ ମୂଳେ ଭଗବାନ)

ମାଳିକ ଛେଳି ଅଡ଼ୁଆ । (ବିଷମ ପଦାର୍ଥର ଏକତ୍ରୀକରଣ)

ମାଛ ତେଲରେ ମାଛ ଭାଜିବା । (ଅପରର ଖର୍ଚ୍ଚରେ ନିଜର କାର୍ଯ୍ୟ ସାଧନ)

ମଇଁଷି ଶିଙ୍ଗ ଫଟା ଯୁଝିଲା ବେଳକୁ ଗୋଟା । (ଏକତାବଦ୍ଧ)

ମାରେ ମାରେ ଭଣ୍ଡାରିଆକୁ ମାରେ । (ଦୁର୍ବଳ ଉପରେ ଦାଉ ସାଧିବା)

ମାଙ୍କଡ଼ ହାତରେ ଶାଳଗ୍ରାମ, ନଚାଇ ନଚାଇ ନେଲା ପ୍ରାଣ ।

(ଅଯୋଗ୍ୟ ଲୋକ ହାତରେ ଯୋଗ୍ୟ ବସ୍ତୁର ଅସମ୍ଭବ)

ମୋତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ ।

(ପ୍ରକୃତ ଅପରିବର୍ତ୍ତନୀୟ)

ମୂଳରୁ ମାଇପ ନାହିଁ, ପୁଅ ନାଁ ଗୋପାଳିଆ ।

(କାରଣ ନଥାଇ କାର୍ଯ୍ୟର ସମ୍ଭାବନା)

ମଣିଷ ପ୍ରକୃତ ମଲେ ଛୁଟେ, ଘୁଷୁରି ପ୍ରକୃତ ପଙ୍କେ ଲୋଟେ ।

(ସ୍ୱଭାବ ଅପରିବର୍ତ୍ତନୀୟ)

ମୂଢ଼ ତରନ୍ତି, ବୃଦ୍ଧ ତରନ୍ତି, ମଝିମଝିଆ ବୁଡ଼ି ମରନ୍ତି ।

(ମଧ୍ୟବିତ୍ତ ଲୋକର ସଙ୍କଟାପନ୍ନ ଅବସ୍ଥା)

ମାଗିବା ଠାରୁ ହୀନ ନାହିଁ କି ଦେବାଠାରୁ ପୁଣ୍ୟ ନାହିଁ ।

ଯାହାର ଲୁଣ ଖାଇ, ତାର ଗୁଣ ଗାଇ । (ଉପକାରୀ ବ୍ୟକ୍ତିର ପ୍ରଶଂସା କରିବା)

ଯେଡ଼େ ବାଉଁଶକୁ ସେଡ଼େ ଫୋଲ । (ବସ୍ତୁ ଅନୁସାରେ ଆଚରଣ

ଯେ ପକ୍ଷୀ ଉଡ଼େ ଯେତେଦୂର, ସେ ଜାଣେ ତାହାର ବେଭର ।

(ଦୃଷ୍ଟିଶକ୍ତିର ଅନୁଭୂତ)

ଯାଚ କଲ୍ୟାଣ, ମାଗି ଝୋଲଗି । (ବଳେବଳେ ପଶି ସମ୍ମାନ ଆଶା କରିବା)

ଯୋଡ଼ାକୁ ଯୋଡ଼ା ସର ନୁହେଁ । (ବଡ଼ ବ୍ୟକ୍ତିର ସାମର୍ଥ୍ୟତା)

ଯେଷାକୁ ତେଷା, ହାରମଜାଦାକୁ ଟାଙ୍ଗିଆ ପଣା ।

(ଯେପରି ବ୍ୟକ୍ତିକୁ ସେପରି ବ୍ୟବହାର କରିବା)

ଷଣ୍ଢକୁ ଲଗା ନାହିଁ କି ଷଣ୍ଢକୁ ପଘା ନାହିଁ । (ଶୃଙ୍ଖଳା ଲଙ୍ଘନ କରିବା)

ଲୁଣ ଖାଏ ହାଣ୍ଡି, ଚିନ୍ତା ଖାଏ ଗଣ୍ଡି । (ଚିନ୍ତାରେ ଶରୀର କ୍ଷୀଣ ହେବା)

ଲେଢ଼ଗୁଡ଼ କନ୍ଧୁଣୀକୁ ବହିଯିବା ।

(ମହାବିପଦର ସମ୍ମୁଖୀନ ହେବା)

ଶୁଣ୍ଢୀର ସାକ୍ଷୀ ମାତାଲ ।

(ସମଜାତୀୟ ପଦାର୍ଥକୁ ସମଜାତୀୟ ପଦାର୍ଥ ଖୋଜିବା)

ଶୋଇଲା ପୁଅର ଭାଗ ନାହିଁ । (ସଚେତନଶୀଳତାର ଅଭାବ)

ଷାଠିଏ ମହଣ ଘିଅ ହେବ ନା ରାଧା ନାଚିବ । (ବର୍ହୁର ଅଭାବ)

ସମୁଦ୍ରକୁ ଶଙ୍ଖେ ପାଣି । (ଅତି ସାମାନ୍ୟ)

ସିଧା ଆଙ୍ଗୁଠିରେ ଘିଅ ବାହାରେ ନାହିଁ ।

(ଯେ କୌଣସି କାର୍ଯ୍ୟ ସହଜରେ ସାଧିତ ହୁଏ ନାହିଁ)

ସବୁ ଯାଉ ମହତ ଥାଉ, ମହତ ଗଲେ ନମିଳେ ଆଉ । (ମହତ୍ତ୍ୱ ଅକ୍ଷୁର୍ଣ୍ଣ ରଖିବା)

ହାତେ ମାପି ଗୃଖଣ୍ଡେ ଚାଲିବା ।

(ସାବଧାନତା ଅବଲମ୍ବନ କରିବା)

ହାତରେ ନଥାଇ ଧନ, ପୁଅ ବାହା କରିବାକୁ ମନ ।

(କାରଣ ନଥାଇ କାର୍ଯ୍ୟର ସମ୍ଭାବନା)

ହଗିବ ନାହିଁ କି ବାଟ ଛାଡ଼ିବ ନାହିଁ ।

(କୌଣସି କାମ କରାଇ ନଦେବା)

ହାତରୁ ଖାଇ ଘୋଡ଼ା ଆଗେ ଡେଇଁବା ।

(ନିଜ ଖର୍ଚ୍ଚରେ ଅପରର କାର୍ଯ୍ୟ ସାଧନ କରିବା)

ହାତରେ ଗୁଡ଼, ଅଣ୍ଟିରେ ଖୁର । (ବିଷକୁମ୍ଭ ପୟୋମୁଖ)

ହଜିଲା ବଳଦ ଖୋଜିଲା ଠେଇଁ ।

(ମନ ଯାହା ପାଞ୍ଚେ ବେଳେବେଳେ ତାହା ଆସେ)

ହାତ ଅଲସେ ଜଣ ବଙ୍କା ।

(ଅତ୍ୟଧିକ ଆଳସ୍ୟ ପରସ୍ପୃଣତା)

କ୍ଷେତକୁ ଗଲେ ପାଇଟି ଦଶେ ।

(ଠିକ୍ ଜାଗାରେ ପହଞ୍ଚିଲେ ବୁଦ୍ଧି ଆସେ)

—*—